# ଚଉରା-ଅସି କବିତା

( ଚଉରାଶୀ )

ପ୍ରଫେସର ଡାକ୍ତର ବକ୍ରମ ଦାସ



ଓଡ଼ିଶା ବୁକ୍ ଷ୍ଟୋର

# ଚଉର୍-ଅସି କବିତା ( ଚଉରଶୀ )

କବି :
ପ୍ରଫେସର୍ ଡାକ୍ତର ବିକ୍ରମ ଦାସ

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର୍
ବିନୋଦ ବିହାରୀ, କଟକ-୨

ପ୍ରଥମ ପ୍ରକାଶ :
ଦଶହରା—୧୯୯୫

ପ୍ରଚ୍ଛଦ :
ଅସିତ୍ ମୁଖାର୍ଜି

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଖୋଲସାହି (ନିଉ କଲୋନୀ), କଟକ-୧

**CHAURA-ASI KABITA**

by
Prof, Dr. Bikram Das

Published by
Sri Govinda Charana Patra
Orissa Book Store
BinodBehari, Cuttack-2

1st Edition : 1995

**Price : Rs. 40/-**

ISBN 81-7400-114-X

## ମୁଖବନ୍ଧ

( ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଭାପତି ପଦ୍ମଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ଲେଖନୀରୁ )

ପ୍ରଫେସର ଡାକ୍ତର ବିକ୍ରମ ଦାସଂଙ୍କ ପ୍ରଣୀତ ଚଉରାଶୀଟି କବିତା ସଙ୍କଳିତ ଏ ପୁସ୍ତକର ନାମ ଲେଖକ ଅର୍ଥାଂତରରେ "ଚଉରା-ଅସି କବିତା" ରଖିଛନ୍ତି । ଏଭଳି ନାମକରଣର ତାତ୍ପର୍ଯ୍ୟ ହେଉଛି, ଏ ପୁସ୍ତକରେ ପୂଜା-ପାର୍ବଣ, ବ୍ରତ ଓଷା ଆଦି ଧାର୍ମିକ ଅନୁଷ୍ଠାନ ଉପରେ ଲିଖିତ କବିତାମାନ ରହିଛି । ତା ସାଂଗକୁ ସମାଜରେ ଘୃଣିଥିବା ଦୁର୍ନୀତି, ଭ୍ରଷ୍ଟାଚାର ଓ ନାନା ପ୍ରକାର ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ପ୍ରଥା ବିରୁଦ୍ଧରେ ଲିଖିତ ଅନେକ କବିତା ମଧ୍ୟ ସ୍ଥାନିତ ହୋଇଛି । 'ଚଉରା' ତ ହିଂନ୍ଦୁ ଗୃହରେ ଏକ ପବିତ୍ର ପୂଜା ସ୍ଥଳୀ । ତାହା ଧାର୍ମିକ କବିତା ଗୁଡ଼ିକର ପ୍ରତୀକ ଏବଂ 'ଅସି' ସାମାଜିକ ଅନାଚାର ଓ ଦୁର୍ନୀତି ବିରୁଦ୍ଧରେ ଲେଖକଂଙ୍କର ଶାଣିତ ପ୍ରତିବାଦର ଏକ ରୂପକ । ସେହି ଦୃଷ୍ଟିରୁ ଦେଖିବାକୁ ଗଲେ ଲେଖକଂଙ୍କର ନାମକରଣଟି ଯଥାର୍ଥ ହୋଇଛି ।

ଏହି କବିତା ଗୁଡ଼ିକରୁ କେତେକ ସ୍ୱ ନାମରେ ଏବଂ ଛଦ୍ମ ନାମରେ, କେତେକ ଓଡ଼ିଆ ପତ୍ରପତ୍ରିକାରେ ଯଥା—ନଆଁଖୁଣ୍ଟା, ନବଭାରତ, ଝଂକାର ପ୍ରଭୃତିରେ ପ୍ରକାଶ ପାଇଥିଲା । ଲେଖକ ଓଡ଼ିଶାର ଗ୍ରାମ୍ୟ ଜୀବନକୁ କବିତାରେ ରୂପାୟିତ କରିବାକୁ ଚେଷ୍ଟା କରିଛଂନ୍ତି ଏବଂ କେତେକ କବିତାରେ ସଫଳ ମଧ୍ୟ ହୋଇଛଂନ୍ତି । ଗ୍ରାମୀଣ ଓଡ଼ିଆ ଜୀବନର ବହୁଚିତ୍ର ଲେଖକଂଙ୍କ ଲେଖନୀ ମୂନରେ ଜୀବନ୍ତ ହୋଇ ଫୁଟି ପାରିଛଂନ୍ତି । ଦୈନଂନ୍ଦିନ ଜୀବନର ନାନା ସାଧାରଣ ଘଟନା, ସୁଖ, ଦୁଃଖ, ଆଶା, ନୈରାଶ୍ୟ କବିତା ମାଧ୍ୟମରେ ନୂତନ ଭାବମୂର୍ତ୍ତି ନେଇ ଜନ୍ମ ହୋଇଛଂନ୍ତି ।

ଲେଖକ ନବୀନ ବାଗରିଗର ଜଣେ କୃତୀ ଚିକିତ୍ସକ । ବୃତ୍ତିଗତ ଜୀବନରୁ ଅବସର ନେବାପରେ ସେ ଗତ କେତେବର୍ଷ ହେଲା ସାହିତ୍ୟ ସାଧନାରେ ମନ ବଳାଇଛନ୍ତି । ସେ ସ୍ୱର୍ଗତ ପଂଡିତ ନୀଳକଂଠ ଦାସଂକର କନିଷ୍ଠ ପୁତ୍ର । ତେଣୁ ସାହିତ୍ୟ ଯେ ତାଂକ ରକ୍ତମଜ୍ଜାଗତ ଏହା କହିବା ବାହୁଲ୍ୟ ମାତ୍ର । ସାହିତ୍ୟ ମଂଦିରକୁ ତ ଅନେକ ଆସନ୍ତି । ଅନେକେ ପୁଣି ଭୃଂଗ ଆକାଂକ୍ଷାମାନ ନେଇ ଏ ପବିତ୍ର ପୀଠକୁ ନିଜ ସ୍ୱାର୍ଥସାଧନାରେ ଲଗାଇ କଳୁଷିତ କରଂନ୍ତି । ମାତ୍ର ବିକ୍ରମ ଦାସ ଜଣେ ନିଷ୍ଠାପର ଋତ୍ୱିକ । ସେ ସାହିତ୍ୟକୁ ଜୀବନର ବ୍ରତ ହିସାବରେ ହିଁ ଗ୍ରହଣ କରିଛଂନ୍ତି । ବିଳାସ ରୂପେ ନୁହେଁ ।

ଏଇ ଅଳ୍ପ କେତେ ବର୍ଷ ମଧ୍ୟରେ ସେ କେତେଗୁଡ଼ିଏ ମନୋଜ୍ଞ ଉପନ୍ୟାସ ଯଥା "ମଣିମାଣିକ୍ୟ, ଅଲିଖିତ ଇତିହାସ" ଏବଂ ବହୁ ଶିଶୁ ପୁସ୍ତକ, ଭ୍ରମଣ କାହାଣୀ, କ୍ଷୁଦ୍ର ଗଳ୍ପ ସଂକଳନ ଏବଂ ଜୀବନୀ ପ୍ରଭୃତିର ରଚୟିତା ରୂପେ ଓଡ଼ିଶାର ସାହିତ୍ୟ ଜଗତରେ ବେଶ୍ ଖ୍ୟାତି ଅର୍ଜନ କରିଛଂନ୍ତି ।

ଶଂସିତ ପୁସ୍ତକରେ ଲେଖକଂକର ବହୁ ବ୍ୟଂଗ କବିତା ସ୍ଥାନ ପାଇଛି । ସମାଜ ଓ ଶାସନରେ ଯେଉଁ ଦୁର୍ନୀତି, ଭ୍ରଷ୍ଟାଚାର, ପ୍ରିୟାପ୍ରୀତି ତୋଷଣ ଓ ଗରିବ ଶୋଷଣ ଦିନକୁ ଦିନ ବଢ଼ି ଚାଲିଛି, ଲେଖକ ସେ ସବୁର ମୁଖା ଖୋଲି ଦେଇଛଂନ୍ତି । "ଅସ୍ପୃ କେଂଦୁ ପତ୍ର", "ପିଆଜ ରାଣୀ","ଶ୍ରେଷ୍ଠ ବେପାରୀ""ସୁଷମ ଖାଦ୍ୟ"ପ୍ରଭୃତି କବିତାମାନ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଲେଖକ ଶାଣିତ ଶ୍ଳେଷ ବାଣରେ ସମାଜରେ ଭଦ୍ର ବେଶରେ ଆସନ ମାଡ଼ି ବସିଥିବା ବ୍ୟକ୍ତିମାନଂକୁ କ୍ଷତ ବିକ୍ଷତ କରିବାକୁ ଛାଡ଼ି ନାହାଂନ୍ତି । ଶାସନ କଳର ବହୁ ଦୋଷ ତ୍ରୁଟି ସେ ଧରାଇ ଦେଇଛଂନ୍ତି ମାତ୍ର ଯେଉଁଠି ଯିଏ ଅପରାଧୀ, ସେଇ ବିଚାରକ, ସେଠି ସାମାଜିକ ନ୍ୟାୟ ବା ମିଳିବ କିପରି ? ସମାଜର ଶୋଷିତ ଓ ଦୁର୍ବଳ ଶ୍ରେଣୀର ଲୋକମାନଂକ ପାଇଁ ହିଁ ତାଂକ କବି କଂଠ ମୁଖରିତ ହୋଇ ଉଠିଛି ।

ଧର୍ମଭିତ୍ତିକ କବିତାଗୁଡ଼ିକ ଯେପରି ସରଳ ଓ ସଂବେଦନଶୀଳ,

ସେହିପରି ଏକ ନିର୍ମଳ ଓ କଳୁଷହୀନ ଜୀବନର ଭୂୟୋଦର୍ଶନରେ ପ୍ରବୁଦ୍ଧ । ନାନା ଶ୍ରେଷ୍ଠ ଶ୍ରେଷ୍ଠ ସରଳ ଚରିତ୍ର ମଧ୍ୟରେ ସେ ଜୀବନର ବୈଚିତ୍ର୍ୟ ଓ ସରସତା ଫୁଟାଇବା ସଙ୍ଗେ ସଙ୍ଗେ ମଣିଷ ଜୀବନର ନାନା ବିଡ଼ମ୍ବନା, ସ୍ୱବିରୋଧ ଏବଂ କରୁଣାତ୍ମକ ପରିସ୍ଥିତି ତଥା ପରିଣତିକୁ ସୁନ୍ଦର ଭାବେ ଚିତ୍ରଣ କରିଛନ୍ତି ।

ଲେଖକଙ୍କ କବିତାରେ ବହୁ ଗ୍ରାମ୍ୟ ଚରିତ୍ର ସବାକ୍ ଓ ସଚଳ ହୋଇ ଉଠିଛନ୍ତି । ତାଙ୍କ କବିତାର ପ୍ରସାଦଗୁଣ ସପକ୍ଷରେ ଏହା ଏକ ବଡ଼ ସାକ୍ଷ୍ୟ । ଲେଖକ ଓଡ଼ିଶାର ପୁରପଲ୍ଲୀ, ତଥା ସହରି ଜୀବନର ବହୁ ରେଖାଚିତ୍ର ପରିବେଷଣ କରିଛନ୍ତି ।

ଓଡ଼ିଶାର ଜନଜୀବନ ପ୍ରତି ସେ ଯେପରି ସାର୍ବିକ ଦୃଷ୍ଟିପାତ କରିଛନ୍ତି ତାହା ତାଙ୍କର ବହୁଦର୍ଶିତାର ପ୍ରମାଣ ଦିଏ । ତାଙ୍କ ହୃଦୟର ଓ ମନର ପ୍ରବଣତା ଯେ ସାଧାରଣ ମଣିଷ ଆଡ଼େ, ଏହା ତାଙ୍କ କବିତା ଗୁଡ଼ିକରୁ ସ୍ପଷ୍ଟ ବୁଝି ହୁଏ ।

ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଯେଉଁମାନେ ଭବ୍ୟ ସଂସ୍କାରବାଦ ଦ୍ୱାରା ସୁଧାରିବାର ପକ୍ଷପାତୀ, ଲେଖକ ବୋଧହୁଏ ସେଇମାନଙ୍କ ଆଶାବାଦରେ ବିଶ୍ୱାସୀ । ମାତ୍ର ସେ ଯାହା ହେଉନା କାହିଁକି ଆମ ଦୂଷିତ ଓ ବାଧିତ ସମାଜର ଭ୍ରଷ୍ଟତା ଓ ଭଣ୍ଡାମି ତାଙ୍କ କବିତାର କାଠଗଡ଼ା ଭିତରେ ଉପଯୁକ୍ତ ଆସାମୀ ପରି ଛିଡ଼ା ହୋଇଛନ୍ତି । ସେମାନଙ୍କର ବିଚାରକ ଏ ଦେଶର ଗଣ ଦେବତା । କୌଣସି ଦରମାଖିଆ ଜାଜ ବା ନ୍ୟାୟାଧୀଶ ନୁହେଁ । କବି ହିଁ ସେଠି ମୁଖ୍ୟ ଅଭିଯୋକ୍ତା । କବି ବିକ୍ରମ ଦାସ ତାଙ୍କର ସେ ଭୂମିକାଟି ସୁନ୍ଦର ରୂପେ ତୁଲାଇ ପାରିଛନ୍ତି ।

ତାଙ୍କ କବିତା ଗୁଡ଼ିକ ମାନବଧର୍ମୀ ଏବଂ ତାଙ୍କ ଉଦାର-ନୈତିକ ଦୃଷ୍ଟିକୋଣର ପରିପ୍ରକାଶ । ମୁଁ ତାଙ୍କ କବି ଜୀବନର ସାର୍ଥକ ବିକାଶ ଓ ସାଫଲ୍ୟ କାମନା କରୁଛି ।

**ସଚ୍ଚିଦାନନ୍ଦ ରାଉତରାୟ**

ମିଶନ ରୋଡ଼
କଟକ

# ମୋର ପଦେ

ମଣିଷ ବୁକୁର ଢେଉ
କାଗଜ କଲମେ ଆଂକେ ଯେଉଁ ଛବି
ତାକୁ ତ କବିତା କହୁ ।

ମୁଁ ବିଧିବଦ୍ଧ ଭାବରେ କେବେ କବିତା ଲେଖି ବସି ନାହିଁ । ଘଟଣା ପ୍ରବାହରେ ଯେତେବେଳେ ଯାହା ମନକୁ ଆସିଛି ତାହା ଲେଖି ପକାଇଛି ଖଣ୍ଡିଆ କାଗଜଠାରୁ ବହି ମଲାଟ, ଚଳନ୍ତା ରେଳଗାଡ଼ିଠାରୁ ପରୀକ୍ଷା ହଲ, ଯେଉଁଥିରେ ଓ ଯେଉଁଠି ଇଚ୍ଛା ହୁଏ ଲେଖି ପକାଇଛି । ତେଣୁ ମୋର ବହୁ କବିତା ଜନ୍ମର ଅଳ୍ପକାଳ ପରେ କାଳଗର୍ଭରେ ଲୀନ ହୋଇ ଯାଇଛନ୍ତି । ସେଥିରୁ କେତେକ ମୋର ସ୍ତ୍ରୀ ଓ ଘର ଲୋକେ ଗୋଟାଇ ରଖି ପାରିଛନ୍ତି ।

ରାଜନୈତିକ ଓ ସାମାଜିକ ଘଟଣା ଉପରେ ମୋର ବହୁ ବ୍ୟଙ୍ଗ କବିତା କବି ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା' ପତ୍ରିକାରେ କବିଙ୍କ ଜୀବିତାବସ୍ଥାରେ ଓ ତାଙ୍କ ତିରୋଧାନ ପରେ ଧାରାବାହିକ ଭାବରେ ବିନା ନାମରେ କିମ୍ବା ଛଦ୍ମ ନାମରେ ପ୍ରକାଶିତ ହୋଇ ଆଦୃତ ହୋଇଛି ।

ସେଥିରୁ କେତେକ ଏବଂ ଅନ୍ୟ ପତ୍ର-ପତ୍ରିକାରେ ପ୍ରକାଶିତ କେତୋଟି କବିତା ମଧ୍ୟ ଏ ପୁସ୍ତିକାରେ ସନ୍ନିବେଶିତ ହୋଇଛି । ଏଥିରେ ତୁଳସୀ ଚଉରାର ଆଧ୍ୟାତ୍ମିକ ଭାବ ଓ ସମାଜର ଦୁର୍ନୀତି ବିରୁଦ୍ଧରେ ଅଗ୍ନି ଜ୍ୱଳନାର ସଂକେତ ଥିବାରୁ ଏହାର ନାମଟି ଚଉରା-ଅଗ୍ନି ରଖାଯାଇଛି ।

ଯେଉଁମାନଙ୍କ ଉଦ୍ୟମ ଓ ସାହଚର୍ଯ୍ୟରେ ଏ ପୁସ୍ତିକାଟି ଆତ୍ମପ୍ରକାଶ କରିବା ସମ୍ଭବ ହେବାକୁ ଯାଉଛି, ମୁଁ ସେ ସମସ୍ତଙ୍କୁ ମୋର ଅନ୍ତରର ଧନ୍ୟବାଦ ଜଣାଉଛି ।

ତିନିକୋଣିଆ ବଗିଚା
କଟକ-୧
୨୦ । ୯ । ୧୯୯୫

**ଲେଖକ**
( ଡାକ୍ତର ବିଷମ ଦାସ )

# ସୂଚୀପତ୍ର

## ଜୀବନ ଦର୍ଶନ



## ସ୍ୱଦେଶ ଚିନ୍ତନ



## କୁହେଳି ପୁଡ଼ିଆ



## ଜୀବନ ରଙ୍ଗ

## ଶାସନ ଚଟଣୀ



## ମନର ଢେଉ



## ଯୁଗ ଚିନ୍ତା





# ଗଣେଶ ସ୍ତୁତି

ସର୍ବବିଘ୍ନ ବିନାଶନ ବିଦ୍ୟାର ଆକର
ଆସିଛ ପାର୍ବଣେ ପ୍ରଭୁ ଘେନ ନମସ୍କାର
ଜନ୍ମି ହିମ କୈଳାଶରେ 'ଉମା' ପ୍ରସାଦରେ
'ଦ୍ୱାର' ଜଗି ରହିଥିଲ ଦେବୀ ଆଦେଶରେ

ସର୍ବ-ଜାଣ ନୀଳକଂଠ ନ ପାରିଲେ ଚିହ୍ନି
କ୍ଷଣକେ ଜଳିଲ ତାଂକ ରୋଷଦ୍ୱେଷ ବହ୍ନି
ଦେବତାର ବିଶ୍ୱରେ ବି ଥାଏ ବିଡ଼ମ୍ବନା
ତ୍ରିଶୂଳ ପ୍ରହାରେ ତବ ଶୀର କଲେ ଚୂନା

ଦେବତା ପିତାର ଯଦି ହୁଏ ମତିଭ୍ରମ
କରିପାରେ ଏହିପରି ଅବିବେକୀ କର୍ମ
ସେ ଦୋଷର ପ୍ରତିକାର କରିବାକୁ ଯଦି
ନିଷ୍ପୃହ 'କରି' ମସ୍ତକ ପାରେ ସିଏ ଛେଦି

କିସ ପାପ, କିସ ପୁଣ୍ୟ ଏ ବିଶ୍ୱ ବକ୍ଷରେ
ରୋଷ ଦ୍ୱେଷ୍ ମୁକ୍ତ ହେବେ କେଉଁପରି ନରେ
ଜ୍ଞାନଦୀପ୍ତ ସ୍ଥିର ଚେତା ଗିରିସୁତା ସୁତ
ତୁମକୁ ସ୍ମରି ଆଶ୍ୱାସ ପାଅଇ ଜଗତ

ସର୍ବ ଶୁଭ କାର୍ଯ୍ୟାରମ୍ଭେ ତବ ଆବାହନ
ଆଚାର ପ୍ରତୀକ ତୁମେ ଆହେ ଗଜାନନ
ସଂସାର ଅନ୍ୟାୟ ରଣେ ରହିବାକୁ ସ୍ଥିର
ମିଳୁ ସଦା ତୁମଠାରୁ ସେ ଅଭୟ ବର ।

# ଭଗବାନ

ମାନବର ଆଶାବାଡ଼ ରୂପେ
କେଉଁଠାରେ ଜନ୍ମିଥିଲା
'ଭଗବାନ' ନାମ
ଶୁଭିବାକୁ ପ୍ରଥମରେ
ମଣିଷର ଅସ୍ପଷ୍ଟ କଣ୍ଠରେ

ଜନ୍ମିଥିଲା ବହୁଯୁଗ ତଳେ
ହିମାବୃତ ପର୍ବତ ଶିଖରେ ?
ଜୀର୍ଣ୍ଣଶୀର୍ଣ୍ଣ
ଯୋଗୀ ଋଷି
ବେଦର ମଂନ୍ତ୍ରରେ ?
କିଂବା ଜନ୍ମଲାଭ କରିଥିଲା
ବାଘ ଭାଲୁ ସାଲୁ ସାଲୁ,
ରୁଦ୍ର ପ୍ରୟାଗରେ
ଅବା ହିମାଳୟ ପାଦଦେଶେ
ବୁଦ୍ଧ ଗୟା କୋଳେ

ସେଇ ନାମ ଭିନ୍ନରୂପେ
ଫୁଟି ବାହାରିଲା
ମହାରୁଦ୍ର ଆରବ ମରୁରେ
'ମୋଜେସ୍'ର କମାଣ୍ଡମେଣ୍ଟରୁ
('ମାଉଣ୍ଟ୍ ସିନାଇ'ର)
ଜନଶୂନ୍ୟ ରୁଦ୍ର ପାହାଡ଼ରେ

ଯାହା ପରେ ପ୍ରକାଶିଲା
ନଉ-ଓଲ୍ଡ଼
ବାଇବଲ, ଅ.ଜ
ଅନ୍ୟରୂପେ
କୋରାନ ଗ୍ରନ୍ଥରେ ।

ଯେଉଁଠାରେ ଜନ୍ମଲଭ୍ୟ
ସେଇସ୍ଥାନ ସବୁବେଳେ
ଥାଏ ବହୁଦୂରେ
ମଣିଷର କୋଳାହଳ
ସମାଜ ବାହାରେ

ସେହି 'ନାମ' ମୃତ୍ୟୁ ପାଇଁ
ପୁଣି ହେଲା ଆଲୋଡ଼ନ
ସାଇବେରିଆର
ହିମାବୃତ ରୁକ୍ଷ କାବଗାରେ
ଋଷିଆର ଜର୍ଜରିତ ବୁଭୁକ୍ଷୁ ବକ୍ଷରେ

ସେ ନାମର ଜନ୍ମ ମୃତ୍ୟୁ ପାଇଁ
ସାଧଇ ସାଧକ ତପ
ନିର୍ଜନ ଗୁହାରେ,
କିନ୍ତୁ ସେଇ ନାମ ଧରି
ଚିରକାଳ ଉଠଇ କ୍ରନ୍ଦନ
ମାନବର ଜନାକୀର୍ଣ୍ଣ
ମନର ଭିତରେ ।



( ଝଙ୍କାର )

# ଦୋଷୀ ଭଗବାନ

ହାରୁମାସ ଖାଦ୍ୟ ଅନ୍ୱେଷଣେ
କ୍ଳାନ୍ତ ଶ୍ରାନ୍ତ ଉଦାସ ମନରେ
ମାଡ଼ିଚ.ଶାବକଙ୍କେ ଗୁଣି
ହରଡ଼ ଚଢ଼େଇଟିଏ
ତାର ନିଷ୍ଫଳତା ପାଇଁ
ଦୋଷ ଲଦ୍ଧି ଭଗବାନ ଠାରେ
ଘାଲୁଥିଲା ବଟବୃକ୍ଷ ପରେ
ବ୍ୟାଧ ପଦ ଶୁଷ୍କ ପତ୍ରେ ପଡ଼ି
ଖସ ଖସ ଶବ୍ଦର ସୃଷ୍ଟିରେ
ଚମକି ଗୁହାଁଳା ଛଳେ
ଶାନ୍ତ ଭାଙ୍ଗିବାକୁ ତାର
ଭଗବାନ ପେଷିଲେ ଶବରେ !
ହାୟ ! କହି ବକ୍ଷୁବ୍ଧ ଅନ୍ତରେ
ଫର କରି ଉଡ଼ିଗଲା ସିଏ ।

ନିର୍ବଶରେ ଭାବଇ ନିଶାଦ
କିଂକର୍ତ୍ତବ୍ୟବିମୂଢ଼ ମନରେ
ପାଂଚ ପ୍ରାଣୀ ବାନ୍ଧି ତାର ଗଳେ
ନିଷ୍ଠୁର ସେ ଭଗବାନ
ସେଇ ତା ଦୁନିଆ ଗଢ଼ି
କପଟି ସେ ତାହାର ମୁଖରୁ
ତାର ଖାଦ୍ୟ ନେଇଗଲେ କାଢ଼ି ।



( ଟାଟାନଗର )

# ଶରଧା-ବାଲି

ଅସହାୟ ଏ ମାନବ ଶିଶୁ
କାହୁଁ ଯୁଗ ଯୁଗ ଧରି
ବୁଲଇ ଦେବତା ଖୋଜି
ପାଇବାକୁ ସୁବର୍ଣ୍ଣ ମନ୍ଦିରେ
ଜୀବନ ହିଁ ମରୀଚିକା ଭରି
ଜନପଦ ଧୂଳି ଗୁଡ଼ି
ତପ୍ତ ବାଲୁକାର ପଥେ
ଖୋଜୁଁ ଖୋଜୁଁ ଧାଏଁ ସେ ଅକୂଳେ
ଜୀବ, ଜନ୍ତୁ, କାଠ ବା ପଥର
କ୍ଷୀଣ ଆଶାର ଉଦ୍ରେକେ
ଯାହା ପାଅଇ ସମ୍ମୁଖେ
ତାର ପାଶେ ନତ କରି ଶିର
ପରାଣର ଅସୀମ ଆବେଗେ
ନିଜ ଦୁଃଖ ସୁଖ ଭୁଲି
ତାରି ଦେହେ ବୋଳିଯାଏ
ସୁଗନ୍ଧିତ ଚୂଆ ଓ ସିନ୍ଦୂର
କାହିଁ ଶାନ୍ତି କାହିଁ ସେ ଦେବତା
ତୀର୍ଥ କାକ ଡାକ ଶୁଣି
ପୁଣି ମନେ ପ୍ରଭୁ ଗୁଣି
ଆଗେ ଚାଲେ କୁହେଳି ପଶିଁ
ଶରୀରକୁ ମନସାଥେ ଟାଣି
ବନ୍ଧୁର ସରଣୀ ପରେ
ଶୋଇ ଉଠି ଥରବରେ

ଧାଏଁ ସିଏ ସପ୍ତସ୍ୱର୍ଗ ସର
ଭେଟିବାକୁ ନୂତନ ଦେବତା
ସରସ ପରାଣ ହାସେ
ପୂର୍ଣ୍ଣ ବରପ୍ରାପ୍ତି ଆଶେ
ଦୂରରୁ ସେ ଜଣାଏ ପ୍ରଣତି
ପହଁଚିଲେ ଶରଧା-ବାଲିରେ
ମନ୍ଦିର ସମ୍ମୁଖେ ରହି
ଅଞ୍ଜଳିରେ ବାଲି ନେଇ
ଦେହେ ମାଖି ଢାଳଇ ଭକତି ।

ଶରୀରର ସବୁ ପୀଡ଼ା ଫେଡ଼ି
ଫଳ ପ୍ରାପ୍ତିର ଆନନ୍ଦେ
ମନ ତାର ନାଚେ ଛନ୍ଦେ
ଲୋମକୂପ ଉଠେ ତାର ଫୁଲି

ସେ ନିଶାର କ୍ରମ ଅବସାନେ
ଆକାଶୁ ବାସ୍ତବେ ପଡ଼ି
ଦେଖେ ପୁଣି ଆଖି ଖୋଲି
ନୈରାଶ୍ୟର ସେ ଅନ୍ଧପୁଟୁଳି



( ବ୍ରହ୍ମପୁର )

•

## ସ୍ୱର୍ଗ ପ୍ରାପ୍ତି

ମୁମୂର୍ଷୁ ବୃଦ୍ଧରେ ଡଙ୍ଗାରେ ବସାଇ
ଗଙ୍ଗାର ମଝିରେ ସଂକୀର୍ତ୍ତନ ଗାଇ
ସରଗେ ପେଶିବା ପାଇଁ
ଗହଳ ଲାଗିଛି ନୌକାର ଉପରେ
ଧର୍ମ ବ୍ୟବସାୟୀ ସ୍ୱର୍ଗପୁରେ ଚଳେ
ସଂକୀର୍ତ୍ତନ ବାଟ ଦେଇ
ରାତିଦିନ ଖାଲି ହରିନାମ ଶୁଣି
ସ୍ୱରଗୁ ଖସିବ ସେ ଦିବ୍ୟ ନିଶୁଣୀ
ଆତ୍ମା ଚାଲିଯିବ ସ୍ୱର୍ଗେ

ହରିନାମୀ ଦଳେ ସୁଭୋଜ୍ୟ ଯୋଗାଇ
ଦାୟାଦେ ତାଙ୍କର ରହିଛନ୍ତି ରହିଁ
ପ୍ରେରିବେ ସ୍ୱରଗେ ଗବେ
ସେହି ସ୍ୱର୍ଗଦ୍ୱାର ଥାଉ ବା ଯେଉଁଠି
ହରିନାମ ଅଟେ ତାର ଚାବି କାଠି
ଖୋଲିଯିବ ସେହି ଦ୍ୱାର
ବାଟ ଫିଟିଯିବ ଧନର ଖର୍ଚ୍ଚରେ
ଚାଲିବ ସେ ଆତ୍ମା ତା ଖୁସି ମନରେ
ଏକଥା ପୁରାଣ ସ୍ଥିର
ଆଗୁ ବି ବ୍ୟବସ୍ଥା ସରିଛି ତାଙ୍କର
ତପ୍ତ ବୈତରଣୀ ହେବାପାଇଁ ପାର
ହୋଇଅଛି ଗୋରୁଦାନ

ମୃତ୍ୟୁ ସଙ୍ଗେ ସଙ୍ଗେ ବ୍ୟବସ୍ଥା ହୋଇବ
ସବୁ ପାପକର୍ମ ଧୋଇ ହୋଇଯିବ
ହେଲେ ଦଶଦ୍ୱା ଭୋଜନ ।

ସ୍ୱରଗେ ରହିବେ ମହା ଆନନ୍ଦରେ
ବସିବେ କଳାସେ ଦେବ ଗହଣରେ
ଶୁଣିବେ ମଧୁର ବାନ
ଚିର ବସନ୍ତର କାଞ୍ଚନ ସ୍ପର୍ଶରେ
ଦେବପ୍ରିୟ ସୁରା ଧରି ତାଙ୍କ କରେ
ଦେଖିବେ ମେନକା ନାଚ
କାହାର ଏ ସ୍ୱର୍ଗ ? ଧର୍ମୀକ ଲଭିବ
ସବୁଧର୍ମେ ଯାର ରହିଛି ପ୍ରଭାବ
କିଏ କଲା କଲପନା
ଧର୍ମୀକର ପାଇଁ ଏ ସୁବିଧା ରାସ୍ତା
ଗରିବ ପାଇଁ କି ଅଛି ବି ବ୍ୟବସ୍ଥା
ମନରେ ନକର ଘେନା
ଗରିବଟି ଯଦି ସଢ଼ିବ ଦୁଃଖରେ
ମନ ରଖି ଖାଲି ହରିଙ୍କ ପଦ୍ମରେ
କରିବ ଭଜନ ବସି
ପିଲାଏ ଗଡ଼ନ୍ତୁ ଭୋକ ଉପାସରେ
ମନରଖି ଖାଲି ହରି ଭଜନରେ
ସ୍ୱରଗେ ଚଳିବ ହସି ।



ଗଙ୍ଗାପ୍ରାପ୍ତି ଦୃଶ୍ୟ, ପାଟଣା (ବିହାର)

# ବାଲି-ତୃତୀୟା

ଗରଜୁଛି ମଶା ଜଳୁଛି ଦୀପାଳି ବାଲି ବଅଁଟିଏ ରହୁଛି ଚାହିଁ
ନିର୍ଜଳା ଉପାସେ ଗୃହଲକ୍ଷ୍ମୀ କେବେ ଦୀପାଳି ବଳିତା ତେଜୁଛି ଯାଇ
ଜଳୁଥିବ ଦୀପ ତାର ରାତି ସାରା ଲିଭିବ ନାହିଁତ କ୍ଷଣକ ପାଇଁ
ସେ ପୁରାଣ କଥା ସତୀର ଆଦର୍ଶ ସେଥିପାଇଁ ଏବେ ବ୍ରତ ପାଳଇ
କି ମିଳିବ ସେଥୁଁ କିମ୍ପାଇ ଏପରି ଉପାସରେ ହୁଅ ଏ କଲବଲ
ଛୁଉଁପଣ ଯେବେ ଚାଲିଲାଣି ଦେଶେ ସ୍ୱାମୀ ପାଇଁ କିମ୍ପା ଏତେ ବଗୁର
ଭଲ ନାହିଁ ଦେହ ଚୂରଦାନ ହେଲା ଉଠିପାରୁ ନାହିଁ ଶେଯରୁ ଏବେ
ପଣାରୁ ଟିକିଏ ଦିଅ ହେ ତୁଣ୍ଡରେ କହୁଛି ମୁଁ କିଛି ହେବନି କେବେ
ସାତବର୍ଷ ହେବୁ କଲ ଏ ଉପାସ ସାତଜନ୍ମ ଲାଗି ତୁମ ପ୍ରାର୍ଥନା
ବାରବର୍ଷ ତପ ଶୁଖୁଆ ପୋଡ଼ାରେ ଯିବ ବୋଲି ମନେକର କି ହେନା
ପଢ଼ିଚ ତ ପାଠ ଦେଖିଚ ତ ତୁମେ ପଡ଼ୋଶୀ ଉପାସ କରଇ ନାହିଁ
ଅନ୍ୟ ଧର୍ମକଥା ରହୁବା ଦୂରରେ ସବୁ ଜାତି ଅବା ପାଳୁଛି କାହିଁ ?
ସମସ୍ତଙ୍କ ସ୍ୱାମୀ ଭଲେ କି ନାହାନ୍ତି ସେ ସମସ୍ତେ ଯିବେ ପାତାଳପୁରୀ
ଜନ୍ମେ ଜନ୍ମେ ଖାଲି ତୁମରି ସ୍ୱାମୀଙ୍କୁ ରହିଥିବ ତୁମେ ସଦା ଆଦରି
ଯେତେ ବୁଝାଇଲି ଅଳ୍ପ ହସିଦେଇ ସବୁ ବୁଝି କିଛି ବୁଝିଲା ନାହିଁ
"ଢେର ତ ହେବଣି ଖାଇଦିଅ ଗଣ୍ଡେ" କହି ବାଢ଼ିବାକୁ ଗଲି ସେ ଧାଇଁ
ଅକାବକା ହୋଇ ଚାହିଁ ମୁଁ ରହିଲି ଭାବିଲି ଆମରି ସମାଜ କଥା
ଏସବୁ କି ଖାଲି କୁସଂସ୍କାରମୟ ଏ ଉପାସ ସବୁ ଅଟଇ ବୃଥା
ଦୂରେ ବହୁଦୂରେ ଆମେରିକାପୁରେ କେତେକାଳ ତଳେ ଥିଲି ମୁଁ ରହି
ଗୋଟିଏ ଘଟଣା ମନେ ଭାସିଗଲା ବସିକରି ଖାଲି ଭାବିଲି ମୁହିଁ
ସେ ଦେଶରେ ଦିନେ ମୋଟି ପ୍ରୌଢ଼ାଟିଏ ହସ ହସ ମୁହେଁ କହିଲା ମୋତେ
ବିଭାଘର ତାର ହେବ ପରଦିନ ଅମୁକ ଗୀର୍ଜାରେ ମହା ଉତ୍ସବେ

ମୁଁ ନଷ୍ଟେ ଯେପରି ପିନ୍ଧି ସେଇଠାକୁ ଦେଖିବାକୁ ବର କନ୍ୟାଙ୍କ ବେଶ
ଭୁଲିଗଲି କିନ୍ତୁ କାର୍ଯ୍ୟର ସ୍ତୂପରେ ଶୋଇବା ପଡ଼ିଲା ହୋଇ ଅବଶ
ଦୁଇଦିନ ପରେ ଦେଖାହେଲା ଯେବେ ଦୁଃଖକଲା ମନେ ବିଦେଶୀ ବାଳା
ପ୍ରୌଢ଼ ଏକ ଡାକ ସ୍ୱାମୀ ବୋଲି କହି ତାର ହାତ ଧରି ଚହ୍ଲାଇ ଦେଲା
ଅଳପ ସମୟ କଥାବାର୍ତ୍ତା ପରେ ଦ୍ୱାଦଶ ବରଷ ବାଳକ ଏକ
ଧାଇଁଆସି ଦୂରୁ ସସଂଭ୍ରମେ ହସି ଛୁଡ଼ାଦେଲା ତାର ବଢ଼ାଇ ହାତ
ଶୁଣିଲି ପିଲାଟି ଅଟେ ଦୁହିଁଙ୍କର ଦୁହିଁଙ୍କୁ ଡାକୁଛି ସେ ବାପ ମାଆ
ନବ ଦମ୍ପତିଙ୍କ ପୁରୁଣା ସନ୍ତାନ ସେ ଦେଶେ ସମ୍ଭବ ଅଟଇ ତାହା
ବୁଝାଇଲା ପ୍ରୌଢ଼ା ପ୍ରଥମ ବିବାହେ ଏଇ ପୁଅଟି ସେ ଥିଲେ ତ ପାଇ
ଦୁହିଁଙ୍କ ଭିତରେ ତିନି ଛାଡ଼ପତ୍ର ତିନୋଟି ବିବାହ ଯାଇଛି ହୋଇ
'ପାଷଣ୍ଡ' ଭଲ କି ଭଲ 'ଛାଡ଼ପତ୍ର' କପରି କହିବ କିସ କା ମୂଲ
ପୁରୁଣାକୁ ଫିଙ୍ଗି ନୂତନ ଆଦର୍ଶେ ଚାଲିବ ଏ ଦେଶ ହୋଇଛି ସ୍ଥିର
ବାଲକୃଷ୍ଣସ୍ୱାରେ ରହେ ଯେ ଉପାୟ ମୋ କଥା ତ ସିଏ ଶୁଣିଲା ନାହିଁ
ନେହେରୁ ଦାସ୍ୱାଦେ ଶୁଣି ଆମ କଥା ଛାଡ଼ପତ୍ର କଂପା ଦେବେ ଉଠାଇ
ଘୋଡ଼ା ଏକଆଡ଼େ ଅନ୍ୟଆଡ଼େ ରଥ ମଝିରେ ସମାଜ ସାରଥୀ ବୁଢ଼ା
ଭାବିଲି ବେଳକୁ ଥରି ଥରି ମନ ଖାଏ ସିନା ଖାଲି ଯମ କଚଡ଼ା ।



( କଟକ ଗଣେଶପୂଜା ଓ ବାଲ କୃଷ୍ଣସ୍ୱା )

## ବିଭୁଙ୍କ ଭେଟ

କେଉଁଠି ଭେଟିବି ଭଗବାନେ ମୁହିଁ
   ପଚାରିଲି ଖୋଜି ତାପସେ ଗୁହିଁ
ବିଶ୍ୱାସ ମାଧ୍ୟମେ ମିଳନ୍ତି ତ ହରି
   କହି ସେ ତାପସ ଗଲେ ଉଭାଇ
ଆସୁଥିଲା ହସି ପ୍ରେମ ପାଗଳମୀ
   କହିଲା ସେ ହସି, କାହାରେ ଖୋଜ
ଦରିଦ୍ରକୁ ପ୍ରେମ ବନାଏ ଧନୀକ
   ପ୍ରେମ କଥା କିଂପା ମନେ ନ ହେଜ
ଚଣ୍ଡାଶୋକ ପରି ଧର୍ମାଶୋକ ହେଲେ
   ଶାନ୍ତି ହିଁ ଅଟଇ ବିଭୂବାରତା
ଲେଉଟିଲି ଘରେ ଉଦାସ ମନରେ
   ମନେ ମନେ ହେଜି ସେସବୁ କଥା
ଚରମ ବିଶ୍ୱାସେ ଆଉଜି ପଡ଼ିଲେ
   ମୋର ପାଶେ ଆସି ପୁଅ ଓ ଝିଅ
ଦୁହିଁଙ୍କର କଳ ଛୁଣ୍ଡାଇବି ମୁହିଁ
   ପୋଛିବି ଆଖିରୁ ତାହାଙ୍କ ଲୁହ
ଚୁପଚେ ଅନାଇଁ ଅଳ୍ପ ହସିଦେଇ
   ପ୍ରେମର କଟାକ୍ଷ ପକାଇ ଥରେ
ଗୃହିଣୀ ଗଳିଲେ ଘର ଭିତରକୁ
   ପ୍ରେମ ଓ ବିଶ୍ୱାସେ କି ଶାନ୍ତି ଝରେ
ଘରେ ମୋର ଭରି ସମସ୍ତ ସମ୍ପଦ
   ବାହାରେ ଖୋଜଇ ମିଛରେ ବୁଲି
ମାନବ ହୃଦୟେ ବିଭୁଙ୍କ ଆସନ
   ନ ଦେଖଇ ମନ ଅନ୍ଧଙ୍କ ଭଳି ।



# କୃତଜ୍ଞତା

ଧରମର ଲାଗି କଳାତକରାଳ ଶତ ଶତ ଯୁଗ ଧରି
ଯୁଦ୍ଧ ପରେ ଯୁଦ୍ଧ ମଶାଣି କରିଛି କେତେ କେତେ ଇନ୍ଦ୍ରପୁରୀ
ଧରମର ପାଇଁ ଶତ ଯୁବଶିରଃ ମାଟିରେ ଯାଇଛି ଲୋଟି
ଧର୍ମ ନାମରେ କେତେ ଯେ ସଭ୍ୟତା ସବଳ ନେଇଛି ଲୁଟି
ଯେ ଧର୍ମ ବନୁଛି ଜାତିର ନିଶାଣ ସେ ଧର୍ମ କାହାର ପାଇଁ
ନିଷ୍ପେଷିତର ଆକୁଳ ପରଶେ ତାହାର ଆହ୍ୱାନ କାହିଁ
ନିସ୍ୱର ଧର୍ମ ତାହାର କର୍ମ ତା ନିଜ ତୂଳରେ ଭୁଲ
ଦୁଃଖ ଦୁର୍ଦ୍ଦିନେ ଦମ୍ଭ ସେ ଦିଏ ବିଶ୍ୱାସ ସେଠି ଠୁଳ
ଆଶ୍ୱିନ ମାସ ଦେବୀ ମନ୍ଦିର ପାବଚ୍ଛ ମୂଳରେ ଠିଆ
କାଫେର ଦେବତା ପ୍ରସାଦ ଆଶାରେ ବ୍ୟାକୁଳ ଯବନ ଝିଅ
ପୂଜକ କହଇ ଏ ତୈଳ ପିଷ୍ଟକ ନୁହେଁ ମୁଖ ସ୍ୱାଦ ଲାଗି
ଏ ଦେବୀ ଉଚ୍ଛିଷ୍ଟ ଭକତେ ସେବନ୍ତି କି ଲଭ ତାହାକୁ ମାଗି
ଥିଲା ନିଭୃତ 'ମର୍ମର' କାତ୍ରି କହେ ଏ ମସ୍ତ୍ୟ ନିଅ
ସେହି ଉଚ୍ଛିଷ୍ଟ ପ୍ରସାଦକଣିକା ଏହି ହସ୍ତରେ ଦିଅ
ଧର୍ମ ମୋହର ଜନ୍ମଗତ ସିନା ତୁମେ ମୋ ଦେଶର ଭାଇ
ଏ ଜଳ ପବନେ ପୁଷ୍ଟ ମୋ ଶରୀର କୃତଘ୍ନ ନୁହଁଇ ମୁହିଁ
'ମଧୂଆ' ବାଧିକ ଉଲହୋଲ ଶୁଣି ବେଗରୁ ମୁକ୍ତ ଆଶେ
ପୁଅ ପାଇଁ ମୁଁ ମାନସ କରିଲି ଏହି ପ୍ରସ୍ତର ପାଶେ
ପୁଅ ମୁଖେ ମୁଁ ଦେବି ତା ପ୍ରସାଦ କୃତଜ୍ଞତାର ପାଇଁ
କୃତଜ୍ଞର ପାଶେ ନିଜ ଆଜ ପର ଏ ଧର୍ମ ସେ ଧର୍ମ ନାହିଁ ।



ଦୁର୍ଗା ପୂଜା (ସାକ୍ଷୀଗୋପାଳ)

# ଦେଖାଅ ପଥ ମୋତେ

ଅନ୍ଧାର ମାଡ଼ିଆସେ ଦେଖାଅ ବାଟ ମୋତେ
ଏକାକୀ ହୁଏ ମୁଁ ଅଣ୍ଡାଳ
ନ ଦିଶୁ ଦୂର ପଥ ଅବା ସୁଦୂର ଭବିଷ୍ୟତ
ଯାଏ ମୁଁ ପାଦେ ମାତ୍ର ଚାଲି
ଦିବାର ଆଲୋକରେ ଖୋଜନ୍ତି କେବେ ଥରେ
କହନ୍ତି ଦେଖାଅ ହେ ପଥ
ମୋ ପଥ ଦେଖୁଥିଲି ମୋ ବାଟ ଧରିଥିଲି
ଚଳାଇ ନିଜେ ନିଜ ରଥ
ତୁମ ବଳରେ ପୁଣି ତୁମ ଆଶିଷ ଘେନି
ଭୁଲି ମୁଁ ଥିଲି ଦୁଃଖ ଶୋକ
ନିର୍ଭୟ ଆଚରି ଗରବେ ଥରି ଥରି
ଭୋଗ ମୁଁ କଲି ଦିବାଲୋକ
ଭୁଲେ, ମୁଁ ପଛକଥା ତୋ ବଳେ ହେ ଦେବତା
ତୋହରି ଆଶୀର୍ବାଦ ପାଇ
ଏବେ ବି ଆହେ ନାଥ ଦେଖାଅ ମୋତେ ପଥ
ବନ୍ଧୁର ପଥ ଚାଲେ ତେଇଁ
କର୍ଦ୍ଦମ କଣ୍ଟକିତ ଶାଣିତ ନଦୀ ସ୍ରୋତ
ସନ୍ଧ୍ୟା ପଥ ଦେଇ
ଏ ରାତି ଶେଷ ଯାଏ ମୁଁ ଖାଲି ଚାଲିଥାଏ
ଦେଖାଅ ପଥ ମୋତେ ସାଇଁ
ଉଷାର ପୂର୍ବାଭାସ ଅପ୍ସରା ସ୍ମିତ ହାସ
ଯାହା ମୁଁ ପାଏ ଏତେ ଭଲ
ଭୁଲି ତ ଥିଲି ସତେ ଦେଉ ସେ ପୁଣି ମୋତେ
ସ୍ୱର୍ଗୀୟ ପ୍ରେମର ସମ୍ଭାର ।



# କଅଣ ପାରିବା କରି

ଏ ଜୀବନେ ସବୁ କାର୍ଯ୍ୟ ଆମେ ପାରିବାନି ସାରି
ରଖିତ ପାରିବା ନାହିଁ ସବୁବେଳେ ସବୁକାଳେ
ସମସ୍ତଙ୍କୁ ଖାଲି ଖୁସି କରି

ଦୁନିଆରେ ଯେତେ ଭୁଲ ଆମେ କେବେ ପାରିବାକି
ଆମରି ଇଚ୍ଛାରେ ଅବା ଆମ ଭଲ କାର୍ଯ୍ୟବଳେ
ଅନାୟାସେ ସେସବୁ ସଜାଡ଼ି

ଅଗ୍ରଗାମୀ ଦୁନିଆଁକୁ ଅଟକାଇ ପାରିବାକି
ନୂଆ ଧ୍ୱଂସପଥ ଛାଡ଼ି ପୁରାତନେ ଫେରିବାକୁ
ପରମ୍ପରା ଦଉଡ଼ରେ ଭିଡ଼ି

ତଥାପି ପାରିବା କରି ଆମ ହାତେ ଯାହା ହେବ
ସାଧୁଭାବେ ଗଢ଼ିବାକୁ ସ୍ୱାଭାବିକ ନମ୍ରତାରେ
ବିବେକରେ ଆମେ ଅନୁସରି ।



# ପଲାୟନ

ଏପରି ବି ବେଳ ଆସଇ ଜୀବନେ ଯେବେ ସବୁ ହୁଏ ଖାଲି ଭୁଲ
ଚାଲିବାର ପଥ ହୁଅଇ ଦୁଃସହ ଆଗେ ପାହାଡ଼, ହୁଅଇ ଠୁଳ
ବଢ଼ିଯାଏ ଋଣ ଅଣ୍ଟା ହୁଏ ଶୂନ୍ୟ, ମନ ଆତଙ୍କେ ଯାଅଇ ଡରି
ହସିବାକୁ ମନ ଯେତେ ବିଚାରିଲେ ଦୀର୍ଘ ନିଶ୍ୱାସ ଆସଇ ଚାଲି
ଜୀବନର ଗତି ନୁହଁଇ ସଳଖ ଖାଲି ବଙ୍କା ଟଙ୍କା ତାର ପଥ
ଧୈର୍ଯ୍ୟ ଧରି ପୁଣି ଆଗେଇ ଚାଲିଲେ ଲକ୍ଷ୍ୟ ପହଞ୍ଚିବ ଅବା ରଥ
ଦୁର୍ବଳ ମନରେ ଥା, ଥା, ମା, ମା ହୋଇ ହାତ'ପାଖରେ ଥିଲେବି ଚାନ୍ଦ
ଅଭାଗା ମଣିଷ ହିନ ହି'ପହରେ ହାତେ ଆଖି ମୁଜି ସାଜେ ଅନ୍ଧ ।
ଲକ୍ଷ୍ୟ ପହଞ୍ଚିବା ଅନତି ପୂର୍ବରୁ ହେଇ କେତେ ଲୋକ ପଛଘୁଂଚି
ଅଳପକେ ସବୁ ହାତରୁ ହରାଇ ପରେ ଝୁରୁଥାନ୍ତି ସେଇ କଥା ।
ନିଜ ଦୋଷ ନିଜେ ବୁଝି ନ ବୁଝନ୍ତି ଆନ ଉପରେ ଲଦନ୍ତି ଦୋଷ
ଅନ୍ୟପରେ ରାଗି ନିଜକୁ ଦଣ୍ଡାନ୍ତି ବୃଥା କଥାରେ ଲଭନ୍ତି କ୍ଳେଶ
ପଥେ ଅଗ୍ରଗତି ହେଲେ ବି ମନ୍ଥର ତେବେ ଭାବଇ ଉଦ୍‌ଯୋଗୀ ଜନ ।
ଆଉଥରେ ଚେଷ୍ଟା କରିଲେ ହୁଏତ ମିଏ ଜଣିବ ତାହାର ପଣ
ନିଜକୁ ପରୀକ୍ଷା କରି ଥରି ଥରି ନିଜ ଦୋଷକୁ ଉଖାରି ଦେଖେ
ସେ ଭୁଲ କିପରି ନ ହୋଇବ ଆଉ ନିଜେ ସେଥିକୁ ତ ପଣ ରଖେ
ସୁଖ ଦୁଃଖ ପରି ଜିତା ହାରା ଦୁଇ ଭାତ ଥାଳିର, ଦୁଇଟି ପଟ
କେବେ କେଉଁପଟ ଆସଇ ନିକଟେ ଭାଗ୍ୟ ଉପରେ ମାରଇ ହାତ
ସୁଖଠାରୁ କିଏ କେତେ ନିକଟରେ ଅବା ଦୁଃଖଠାରୁ କେତେ ଦୂରେ
ମାନବର ବୁଦ୍ଧି ଜାଣି ନ ପାରଇ ଖାଲି ବୃଥାରେ ଅଣ୍ଡାଳି ମରେ
ଜୀବନ ଯୁଦ୍ଧରେ ପଛଘୁଂଚି ନାହିଁ ବୀର ଯୋଦ୍ଧା ପରି ଯୁଦ୍ଧ କରି
ଅତି ବିପଦରେ ନହରାଅ ଧୈର୍ଯ୍ୟ ତୁମେ ମରି, ଅବା ମରୁ ଅରି
ଜୀବନର ଭାର ହୋଇଲେ ଦୁଃସହ ଯେବେ ତଳକୁ ଲଅଇଁ ମଥା
ଦୁନିଆକୁ ଛାଡ଼ି ପଳାଇବା ପାଇଁ କେବେଁ ନକର ହେ ତୁମେ ଚିନ୍ତା ।



(କଟକ, ଜେଲରୋଡ଼ )

# ଟିକିଏ ହସ

ଜୀବନ କସ ? କାନ୍ଦିବା ପାଇଁ
ଆଉ କି କଷ୍ଟ ଜୀବନେ ନାହିଁ
    ମାଆ କାନ୍ଦରେ ଜନମେ ଶିଶୁ
    କାନ୍ଦଇ ଶିଶୁ କେହି ନ ହସୁ
ତାର କାନ୍ଦରେ ଦୁଃଖ ବା କରେ କେହି
ତଥାପି କାନ୍ଦ ଫଟାଇଦିଏ ମନ୍ତ୍ର
    କାନ୍ଦେ ଆରମ୍ଭ ଜୀବନ ଲୀଳା
    କାନ୍ଦରେ ସରେ ଜୀବନ ଖେଳା
କାନ୍ଦର ବିଶ୍ୱେ ଅଭାବ ନାହିଁ
କନ୍ଦାଇ ସର୍ବେ ଛାଡ଼ିବେ ଭୂଇଁ
    ଅନ୍ଧାର ବୁକେ ତବ ମୟୂଖ
    ଜୀବନ ଧାରେ ସେପରି ସୁଖ
ଗୁପତେ ଆସେ ତୁମରି ଘରେ
ତୁମ କାନ୍ଦରେ ଦୁଃଖେ ସେ ଫେରେ
    ନ ଡର ତାକୁ କରହେ ବଶ
    ଜୀବନ କାଳେ ଟିକିଏ ହସ ।



## ସମାପ୍ତ ନୁହେ ତବ କାହାଣୀ

ଯୁଗ ଯୁଗ ପୀଡ଼ିତ କଂକାଳ ନୂତନ ଜୀବନର ପରଶେ
ଗୁହିଁରହେ ନିସ୍ତବ୍ଧ ଅନ୍ତରେ ଶୃଙ୍ଖଳ ଖୋଲି ତା'ର ହରଷେ
ରୁଦ୍ଧ ହୃଦୟ ଆଜ କାହାରେ ସଂଭ୍ରମେ ଖୋଜିବୁଲେ ସ୍ୱପନେ
ପାଇ ସେ ପାଏ ନାହିଁ ଭାଷାରେ ଭାବ ତା ମରେ କାହିଁ ଗୋପନେ
ମୁକତି ଆଲୋକର ହାତରେ ସେ ଯୁଗ ଅନ୍ଧାରୁଆ ରାତିରେ
ଗୁଳିଲା ପଣ୍ଡାପୁଅ ଗୁଖିଆ ବିଳାସ ଫିଙ୍ଗି ବନ ଗହନେ
ନଗର ବନେ ପୁଣି ଫୁଟିଲା ଶତ ଯୁଗ ସଂଚିତ କଳିକା
ସ୍ପନ୍ଦିତ ହେଲା ତାର ଅନ୍ତର ହସିଲା ଯେବେ ଫାସି ଫଳକା
ଆସିଲେ କାହ୍ନୁଁ ଭାସି ମୋହନ ଅହିଂସା ଗୁରୁ ଜୋର ହାତରେ
ନିସ୍ତବ୍ଧ ଦୁଇ ଯୁଗ ଯୁବକ ପ୍ରଣମେ ଭକ୍ତିଭରା ଅନ୍ତରେ
ଖେଳିଲା ପୁଣି ବନ ସ୍ପନ୍ଦନ କୋହମାରେ ନିଭୃତ ଶବଦେ
ତୁଙ୍ଗ ଆକାଶେ ପଥ ଫିଟିଲା ରୁଦ୍ଧ ସେ 'ଦିଲ୍ଲୀ ଚଲୋ' ନିନାଦେ
ଗଢ଼ିବୁ ତୁ ନିଜ ହାତେ ନିଜରେ ଅମୃତ କିଂବା ବିଷ ପରଶି
ଗୁହାଁନା ତୁ କଂକାଳ ପଛରେ ଦେଖ୍ ତୁ ସମ୍ମୁଖରେ ଭରସି
ସରି ତ ସରିନାହିଁ ସେ ପଥ ଗୁହିଁରହେ କଙ୍କର ବାହିନୀ
ଚାଲ ହେ ମାଡ଼ିଚାଲ ପଥିକ ସମାପ୍ତ ନୁହେଁ ତବ କାହାଣୀ ।



('ନବଭାରତ' ସ୍ୱାଧୀନତା ସଂଖ୍ୟା)

# ଅମର ହେ ନେତାଜୀ

ଜଟିଳ କାଳର ଗମ୍ଭୀର ଗହ୍ୱରେ ଲୁଚିଛ ନେତାଜୀ ଆଜ
ବୁଝିକି ପାରିବ ନେତାଏ କପଟ ଖେଳନ୍ତି ସ୍ୱାର୍ଥର ବାଜି
ହେଉଛି ! ତୁମର ଜନମ ଦିବସେ ସପ୍ତବିଂଶ ଜାନୁୟାରୀ
ବୃଥା ସ୍ମୃତି କେନ୍ଦ୍ରେ ଦୁଇଟି ପଦବୀ ନେତା ଦୁଇଜଣ ବରି
ଏତିକି ବକ୍ତୃତା ଝାଡ଼ି ଝାଡ଼ି ନେତା ଭାରତ ମଙ୍ଗଳ ପାଇଁ
ଲେଉଟନ୍ତି ପୁଣି ଉପ ଉପାଧିରେ ମଂତ୍ରୀ ପଦଟିଏ ପାଇ
ଶାସନର ପାଇଁ ହିଡ଼ା କଣା ଦିକା ନେତାମାନଙ୍କର ମାତି
ଟଙ୍କାର ଖେଳରେ ରାଜନୀତି ଗଲେ ଲାଜ, ଧର୍ମ, ସବୁ ବିକି
ହେ ଚରମ ତ୍ୟାଗୀ ଗହନ ବନରେ ପଦ ତୁମେ ଚାଲି ଗଲ
ପରକୁ ଆପଣା କରି ବିଦେଶରୁ ସ୍ୱାଧୀନତା ଡାକି ଦେଲ
ସ୍ୱାଧୀନତା ଯେବେ ଉଇଁଲା ଗଗନେ ସେ ସ୍ୱାର୍ଥାନ୍ୱେଷୀର ଦଳ
କ୍ଷମତା ଲୋଭରେ ହୋଇଲେ ଶାସକ ଦେଶେ କରି ଦୁଇ ଫାଳ
ସେହି କାଳୁ ପରା ସ୍ୱାର୍ଥର ଶାଗୁଣା ମଂତ୍ରୀ ଆସନରେ ବସି
ନିସ୍ୱ କରି ଦେଲେ ଦେଶକୁ ଅଣ୍ଡାଳ ଆପଣା ସ୍ୱାର୍ଥକୁ ତୋଷି
ଶାସକ ଗ୍ରୂପକୁ ମୁଣ୍ଡରେ ଲଗାଇ ଦେଶକୁ ଭଣ୍ଡନ୍ତି ନେତା
ନିଜ ରୂପ ଝଲ ପଡ଼ନ୍ତି ଲୁଚିଲେ ଖାଇ ଜନତା ଠୁଁ ଜୋତା
ତଥାପି ସେ ନେତା ଗୁପତ ବେଶରେ ଶାସନେ ଯାଆନ୍ତି ଭରି
ଆସ ହେ, ନେତାଜୀ ! ନାଶକର ଦୃଢ଼େ ଗୁପତ-ଜନତା ଅରି ।



( ଫେବୃଆରୀ ୧୯୭୯ )

# ଉଭା ହୁଅ ସବ୍ୟସାଚୀ

ପଥ ବନ୍ଧୁର !  ଘୋର ଅନ୍ଧାର
ପିଶାଚ କରଇ ନାଚ
ନେତା 'ମହାକାଳ'  ଜାନ୍ତ ଦୁର୍ବଳ
ଶକୁନ ରଚଇ ହାସ
ଅଣୁବୋମା ଫୁଟେ  ପଶ୍ଚିମ ତଟେ
ପୁରୁବେ 'ଚୀନା'ର ଖେଳ
ଅରୁଣାଞ୍ଚଳେ  ଟାଦ୍ରୀର ମେଳେ
ଶୁଭଇ ଅଶୁଭ ଗୋଳ
କାହିଁ ସଂସ୍କୃତି ?  ନାହିଁ ଜାଗୃତି
ମୂଢ଼ ଦେଶ ନେତା ଆଜ
ସତ୍ୟର ଚିନ୍ତା  ଘୃଣ୍ୟ ଏ ଦେଶେ
ଚଢ଼ୁଛି ଖେଳର ବାଜ
ମଂନ୍ତ୍ରୀର ଦଳ  ଅକ୍ଷମ, ଖଳ
କ୍ଷମତା ନିଶାରେ ଭାସି
ଉତ୍କଳ ବୁକେ  ତାଣ୍ଡବ ରଚେ
ପଡ଼ୋଶୀ ଶୋଷକ ଆସି
ଦେଶ ସନ୍ତାନ  ଘରେ ହୀନମାନ
ବାହାରେ ତା ସ୍ଥାନ କାହିଁ
ଦେଶେ ଦୁର୍ଭିକ୍ଷ  ବେପାରି ପକ୍ଷ
ମରେ ସେ ଖଟଣୀ ଗୃହିଁ
ନିର୍ଭୀକ ବୀର  ଜନ୍ମାଇ ସ୍ଥିର
ରହିଛ କାଂପାଇ ଲୁଚି
ଦୁର୍ଦ୍ଦିନ ବେଳେ  ଘନ ଅନ୍ଧକାରେ
ଉଭା ହୁଅ ସବ୍ୟସାଚୀ ।



## କାହିଁ ଗଲେ ସେ ଦେବତା

( ୧୯୫୧ ନିର୍ବାଚନର ପଣ୍ଡିତ ନୀଳକଂଠ ଦାସଙ୍କ ନିର୍ବାଚନକର୍ମୀ
ଡାକ୍ତର କେଶବ ବଳିଆରସିଂହଙ୍କ ଅନୁଭୂତିରୁ )

ମାର୍ଗଶୀର ମାସ ଶୀତ ଥୁରୁ ଥୁରୁ ଖଣ୍ଡିଆ କନାରେ ଦେହ ଆବୋରି
ଦରବୁଢ଼ୀଟିଏ 'କଣାସ' ଦାଣ୍ଡରେ ଭୋଟ ଅଫିସ ଖୋଜଇ ବୁଲି
ଛଅଟି ଟଗଣୀ ପୋଷଇ ସେ ନିତି ଧାନ କୁଟା କଣ୍ଡା ତାର ବେଉସା
ଭୋଟ ହୋଇବ ଅଫିସ ବସିବ ଶୁଣା ହେବ ପରି ବହୁ ପଇସା
ପଡ଼ା ଅଫିସରେ ବଡ଼ ବଡ଼ ବାବୁ ହୋଟେଲ ଖିଆଲ ଆସିଲି ଛାଡ଼ି
ଗାଁଟ ଗୁହାଳଘରେ ଦେଖିଲି ସେ 'ଫଟୋ' ଗଢୁଥିଲେ କର୍ମୀ ଖାଇବାଇ ମୁଢ଼ି
କେ ଜଣେ କହିଲା କସ ତୋର ଲୋଡ଼ା ଦେଶସେବୀଙ୍କର ଏହି ଅଫିସି
ଯେତେପାରୁ ଧାନ ଚାଉଳ କରିବୁ ଦେବୁ ତୋର ଭାଗ ଏଥିରୁ କିଛି
ବୁଢ଼ୀ କହେ ବାବୁ, ବଡ଼ ଗରିବ ମୁଁ ଭାଗେ ମୋ ଚାଉଳ ନେବ ମୁଁ କୁଣ୍ଡା
ନିଜର ମୁଣ୍ଡରେ ମୁଣ୍ଡାଇ ଆଣିବି ଦେବ ହେ ପଇସା ଆଉ ଦି'ଗଣ୍ଡା
ଦୁଇଦିନ ପରେ ଆସିଲା ସେ ବୁଢ଼ୀ ମୁଣ୍ଡରେ ବୋଝାଇ ଚାଉଳ ଖୁଦ
ଆଖିରୁ ଦିଟୋପା ଲୁହ ପଡ଼େ ଝରି କଥା ନ ପଇଟେ ସ୍ୱର ଗଦ୍‌ଗଦ
କହିଲା ବାବୁହେ ରଖ ସବୁତକ ପାଇଛି କାଲି ମୁଁ ତାହାର ମୂଲ
ଯେ ରୂପ ଦେଖିଲି ଯେ ଭାଷା ଶୁଣିଲି କି ମୂଲ ହୋଇବ ତାହାର ଭୁଲ
କାଲି ନଈକୂଳେ ସଭା ହେଲାବେଳେ ଦେଖିଲି ତ ଏଇ ଫଟୋ ମୂରତି
ଶାନ୍ତ ଶାନ୍ତ ମଥା ଲଇଁ ପଡୁଥିଲା ଗୁପତେ ବାଢ଼ିଲା ମୋର ଭକତି
ଦୁଃଖୀଜନ ପାଇଁ ଯାହାର ଜୀବନ ସେ ନର ଦେବତା ସେଠାରେ ଉଭା
ତାଙ୍କ ଲୋକ ପାଇଁ ଚାଉଳ କାଣ୍ଡିବା ଏତକ ତ ମୋର ଏ ଦେଶ ସେବା
ଲୋଡ଼ା ନାହିଁ ମୋର ପଇସା ଚାଉଳ ତାଙ୍କର ଆଶିଷ ମୋହର ଲୋଡ଼ା
ହେନହେ, ଏତକ ଦିଅ ମୋତେ ବାବୁ ତାଙ୍କ ପଦେ ଲଗା ଫୁଲର ତୋଡ଼ା
ଥରଥର ହୋଇ ଆସେ ଯେତେ ଭୋଟ ବୁଢ଼ୀ ତ କାହାକୁ ଆସଇ ଖୋଜି
ପାରିଲେଣି ପିଲେ ଅଛୁ ସିଏ ସୁଖେ ଅଣ୍ଟାଟି ଲଇଁଚ ଅଲପ ଭାଜି
ଯାଇନାହିଁ ସିଏ ଦେଖିବ ତ ନାହିଁ ସେହି 'ନୀଳକଂଠେ' ଆଉ ଏ ଦେଶେ
ଯେ ଦେଶେ ଦେବତା ଯାଇଛନ୍ତି ଚାଲି ରହିଁଚି କେବଳ ତାହାର ଆଶେ ।

●

## ଶେଷ

( ବିପ୍ଳବୀ ନେତାଙ୍କ ପତ୍ନୀର ଶୋକୋଚ୍ଛ୍ୱାସ । )

ଖଟପରେ ଲମ୍ବିହୋଇ ଶୋଇ
ଜ୍ୱରଗ୍ରସ୍ତ ଚିରଦିନ ପାଇଁ
ଅସଂଯତ କେଶରାଶି ଲୁଣ୍ଠିତ କପୋଳେ
ସ୍ମିତହାସ ଲାଗିଥିଲା ବଦନ ମଣ୍ଡଳେ
ଚକ୍ଷୁ ମୁଦି ଧ୍ୟାନ ମଧ୍ୟେ ଗଲେ ସିଏ ଚାଲି
ସେ ରାଜ୍ୟକୁ ଯେଉଁଠାରୁ କେହି ନାହିଁ ଫେରି

ଆସିଲେ ବହୁତ ଜନ କାନ୍ଦିଲେ କେତେକ
ଦୀର୍ଘଶ୍ୱାସ, ଶ୍ରଦ୍ଧାଞ୍ଜଳି ପୁଷ୍ପର ସ୍ତବକ
ଜୀବନର ସ୍ମୃତିପେଡ଼ି ଖୋଲି
ଦେଇ ସର୍ବେ ଯାଉଥିଲେ ଚାଲି
କିଛି କହି ନାହିଁ ମୁହିଁ
ମୋର କିଛି କହିବାର ନାହିଁ

କମ୍ପିତର ବିଧାନରେ ନାହିଁ କାହା ହାତ
ସମସ୍ତେ ତ ଯିବେ, ସିଏ ଚାଲିଗଲେ ସତ
ବିଧିର ନିର୍ଦ୍ଦେଶେ ଥିଲେ ଜନତାର ଦାସ
ନୀରବରେ କରିଗଲେ ତାଙ୍କ କାର୍ଯ୍ୟ ଶେଷ

ଝୁରୁଛନ୍ତି ଜନେ ତାଙ୍କୁ ତାଙ୍କ କାର୍ଯ୍ୟ ପାଇଁ
ଝୁରିବାକୁ ତାଙ୍କ ପାଇଁ ମୋର ଭାଷା କାହିଁ
ଭବିଷ୍ୟତ ଅନ୍ଧକାର ତାଙ୍କ ବିନା ମୋର
ଏକାକୀ ଜୀବନ ପଥେ ହେବି ଆଗୁସାର

ନ ବୁଝଇ ଥିଲେ ସିଏ କିସ
ଭାବେ ମୁହିଁ, ସବୁ ହେଲା ଶେଷ ।



# ପୁରାତନ ଓ ନୂତନ ଦେଶପ୍ରେମୀ

ପୁରାତନ—

ଥିଲୁ ଆମେ ସଙ୍କଟରେ
ଉଡ଼ାଣିଆ ଶଗଡ଼ରେ
ବଳଦର ଭଳି
ତୁମେ ଦେଖାଇଲ ବାଟ
ଚାଲିଲ ହେ କଣ୍ଟକିତ
ପିଚ୍ଛିଳ ପଥରେ
ଆମ ଧାନକ୍ଷେତ ଜଗି
ଆମ ପାଇଁ ପିନ୍ଧିବାକୁ
ଶୃଙ୍ଖଳ ହାତରେ
ବୁଭୁକ୍ଷୁ ଜନତା ସ୍ୱାର୍ଥେ
ହସି ହସି ମରଣରେ
ଅଟ୍ଟହାସ କଲ
ହେ, ମରଣ ଜୟୀ ସତେ
ସ୍ୱାଧୀନ କେତନ ହାତେ
ଵିଜୟେ ନାଚିଲ
କଂଶ ରକ୍ତ ତବ କାନ୍ତି
ଉଡ଼ୁଥାଉ ଏ ଦେଶର
ସ୍ୱାଧୀନ କେତନ
ତୁମର ସେ ଉଦ୍ଦୀପନା
ପୁଣି ଥରେ ଯୁବ ରକ୍ତେ
ଜଗାଉ ସ୍ପନ୍ଦନ

ଦେଶେ କରିଲ ସ୍ୱାଧୀନ
ତୁମ ପଦେ ଶରଧନ
ଆମ ମଥା ନତ
ଗୁଲି ଯାଇଅଛ ତୁମେ
ଜଗେ ଏବେ କେଉଁ ନେତା
ଆମ ଧାନ କ୍ଷେତ ?
ଭାବଦେଲେ ତୁମ କଥା
ଉକତର ନିଦର୍ଶନେ
ଗଢ଼ିଯାଏ ଲୁହ
ତୁମରି ଦାୟାଦେ କାଂପା
ହେଲେ ଏତେ ଅପଗଣ୍ଡ
ତୁମେ ବାରେ କୁହ ।

ନୂତନ—

ହୁଏ ସାତଖୁଣ ମାଫ
ପିନ୍ଧଦେଲେ ଗଣ ଭେଟେ
ଥରେ ଜସ୍ତ ଟୀକା
ଆମର ଶଗଡ଼ ଲୁଟି
ଆମ ଗଣ୍ଡପଥ ରୋଧି
(ତୁମେ) ଗଡ଼ ଅଟ୍ଟାଳିକା
ଗାଦି ମାଡ଼ି ବସିବାକୁ
ଗଣତନ୍ତ୍ର ଆଇନରେ
ମୁକ୍ତ ଭୋଟ-ଦ୍ୱାର
ତୁମେ କିଣିଗଲେ ଥରେ
ନିଜ ସ୍ୱାର୍ଥେ, ଭୁଲ ଦେଶ
କାନ୍ଦଇ ଭୋଟର
କ୍ଷମତାର ଲୁଟ୍‌ପାଟେ
ନିଜପାଇଁ ପେନ୍‌ସନ୍
ଭଦ୍ର ଚୋରେ ରଚ
ଶୁଣାଅ ବକ୍ତୃତମାଳା
ଦେଶ ଦୁଃଖେ ଆଖିତବ
ମକଚ ମକଚ
ବୋରଝାଂକ ଦଳ ପରି
ଭ୍ରମମାନ ତୁମେ ସଦା
କ୍ଷମତା କୂପରେ
ଯେଉଁଆଡୁ ଆସେ ବରଷା
ସେହିପଟେ ବୁଲାଇଣ
ଦେଖାଅ ଛକରେ

ହେ ଭେଜାଲ ଦେଶପ୍ରେମୀ
ଜାତିଆଶା କାନନରେ
ବାନରର ଭଳି
ଏଡାଳୁ ସେଡାଳେ ଡେଇଁ
ଆମ ଆଶା ଫଳଗୁଡ଼ି
ଢାଅ ତୁମେ ଗିଳି
ଏକଦଳୁ ତଡ଼ା ଖାଇ,ଲୁଚି
ଫେରିଆସ ଧାଇଁ
ଅନ୍ୟ ଦଳ ବାଟେ
ଚକାଆଖି ଜଗନ୍ନାଥ
ମାରଖରେ କେତେକାଳ
ଦେଖିବେ ଏ ନାଟେ ?



# ବେପାରୀ ଓ ଶ୍ରେଷ୍ଠ ବେପାରୀ

ବେପାରୀ—

ନିଦାଘ ଉଜ୍ଜ୍ୱଳ ବହେ ସ୍ୱେଦଧାର
ମଧ୍ୟାହ୍ନେ ବୁଲଇ ଦ୍ୱାରେ ଦ୍ୱାରେ
ବିପଣୀ ସମ୍ଭାର ଧରି ମୁଣ୍ଡପରେ
ବୁଲି ବିକାଳି ସେ ଅନ୍ନ କରେ
ଶୀର୍ଣ୍ଣ ତା ଶରୀର ସ୍ଫୀତ ଗଣ୍ଡଶିରଃ
କୋଡ଼ଗତ ଚକ୍ଷୁ ମୁଖେ ଭରି
କୁରଙ୍ଗ ଛଟକେ ଡେଇଁ ଆଙ୍କବାଙ୍କେ
ଯାଇ ଯାଇ ସିଏ ଆସେ ବୁଲି

ଶ୍ରେଷ୍ଠ ବେପାରୀ—

ହତଭାଗା ଦେଶ ବେପାର ସରସ
ଲୋଭଜନକ ତ ରାଜନୀତି
ବହେନାହିଁ ଝାଳ ମିଳେ ଅର୍ଥବଳ
ନୀତି ନାମେ କରି ଦୁର୍ନୀତି
ଶ୍ରେଷ୍ଠ ବେପାର ଅତି ଚମତ୍କାର
ତିନି ପାଞ୍ଚବର୍ଷେ ଡାକ ପଡ଼େ
ଉପର ପଇସା ଉପରେ ଉଡ଼ାଇ
କିଣିବା ପ୍ରଶ୍ନର ମାଧ୍ୟମରେ
ଥରେ ଗଲେ କିଣି ଧରାସରା ମଣି
ରାଜନୀତି କରେ କଣାବଙ୍କା
ବଦଳଇ ଠାଣି ଭରି ତା ବିପଣୀ
ବରଷକେ ଗଢ଼େ ଅଟ୍ଟାଳିକା
ଅଧୁନେ, ଦେଶରେ ଶ୍ରେଷ୍ଠ ସୃଷ୍ଟିରେ
ବୁଲନ୍ତି ଛଉକା ନେତା ଦଳ
କେତେବେ ଝଙ୍କାଝଙ୍କ କେବେ ଠଙ୍କାଠଙ୍କ
ଲକ୍ଷ୍ୟ, ଶ୍ରେଷ୍ଠ ମହାକାଳ ଫଳ



## ଓଡ଼ିଷୀ (ଶୀ) ବ୍ୟକ୍ତି ପୂଜା

ତୁମ ପରି କେତେ ମରି ବଞ୍ଚିଲେଣି
ଏ ଦେଶ ଶହୀଦ୍ ଆଜି
ସଂପାଦକ ସଂଗେ ଫଟୋ ଗହଳରେ
କାଗଜ ପଡ଼ଇ ଭାଜି
କାହିଁ କେତେ ସଭା ଭାଷଣର ଝଡ଼େ
ଦେଶରେ ଚହଳ ପଡ଼େ
ଗୁଣ ଗାନ୍ ପଢ଼ି ଜନତା ବୁଝଇ
ଏଡ଼େ ଲୋକ ଗ୍ଲୁଲଗଲେ
ଆମ ଏ ସ୍ୱାଇଜେ ପଞ୍ଚସଖା ବୋଲି
ଯାହାରେ ପଡ଼ୁଛି ଡାକ
ସେ ଦ୍ୱିତୀୟ ସଖା (୧) ଋଷି ହରିହର
ପାଇ ନ'ଥିଲେ ଝିଖ
ଅଶୀତି ବରଷେ ଠାଣ ଚୂଡ଼ା ଦଳା
ପାଣିରେ ଭିଜାଇ ଖାଇ
ହସି ଦେଉଥିଲେ ସେ ଦେଶ ସେବକ
ପାଖ ଲୋକ ମୁଖେ ଶୁଣି
କ୍ଷୀର ଟୋପେ ନାହିଁ ବୋଲି ପସ୍ତରିଲେ
ଶୁଭୁଥିଲା ଦୁଃଖ ବାଣୀ
ମୁଣ୍ଡ ଝାଳ ତୁଣ୍ଡେ ମାରି ଯେ ସେବିଲା
ତାପାଇଁ କ୍ଷୀରଠା ପାଣି
ଏବେ ତାଙ୍କ ନାମେ ନାମିତ ସରଣୀ
'ବିନାୟକ' (୨) ପାଇଁ ସଭା
ମୁରଲୀ (୩) ପାଇଁ କି ଗଡ଼ା ସେବାସଂଘ
ପ୍ରସରେ 'ଗଣେଶ' (୪) ପ୍ରଭା

---

(୧) ଅ.ଶୃଙ୍ଖ୍ୟ ହରିହର (୨) ପଣ୍ଡିତ,ଗବେଷକ ବିନାୟକ ମିଶ୍ର
(୩) ପୁରୀର ସ୍ୱାଧୀନତା ସଂଗ୍ରାମୀ ମୁରଲୀ ତ୍ରିପାଠୀ
(୪) ଓଡ଼ିଶାର ପ୍ରଥମ ଭୂତତ୍ତ୍ୱବିତ୍ ଶ୍ରୀ ଗଣେଶ ପ୍ରସାଦ ରଥ

କୁକୁର କାମୁଡ଼ ମଲେ 'ଶରତ' (୫)
ଦିନରେ' ଅଣ୍ଡାଳ ବାଁଟ
ମଲାଗଲା ପରେ ଶ୍ରଦ୍ଧାଭେଦା ହୋଇ
ଚିକ୍କଣ ହେଲା କା ହାତ
ଭଙ୍ଗା କୁଡ଼ିଆରେ କେ ମୁଠେ ନଖାଇ
କଟିବ କାମୁଡ଼ ମଲା
ତୁମେ ତ ଧରିଛ କଙ୍କାଳ ମୂରତି
ଚଢ଼ିଛ ଏବେ ବେକଲ
ତୁମ ପରି ଜଣେ ଗୁଣୀ ଗୁଣବାନ
ଅବଦାନ ନୁହେଁ ଉଣା
ତୁମେ ତ ଲେଖକ, କବି, ଦେଶସେବୀ
ସହସ୍ରରେ ଜଣେ ଗଣା
କେତେ କାଗଜରେ ଲେଖିଛ ଜୀବନେ
କେତେ ଗାଆଁ ଗଣ୍ଡା ବୁଲି
ଦେଶ ପ୍ରଚାରରେ ଜୀବନ କଟାଇ
ଧରିଛ ଭିକାର ଝୁଲି
ହେଲନ ତ ମଂତ୍ରୀ, ଦେଲନ ବକ୍ତୃତା
ନ ତୋଳିଲ କୋଠାଘର
ଯୁଗ ଅନୁସାରେ କାନ୍ଧକୁ ମିଳାଇ
ନକଲ କଲା ବଜାର
ଡାକ୍ତରଖାନାରେ ଔଷଧ କାମୁଡ଼େ
ଔଷଧ ନପାଇ ସଢ଼
ଆଜ କାହିଁ ପାଇଁ ରହିଚ ଆପଣ
ଶୀଘ୍ର ଦୟାକରି ମର
ତେବେ ସିନା ଯାଇ ଫୁଲମାଳ ଦେଇ
'ସମାଜ' ଚିହ୍ନିବ ପର
ବଂଶ ରହିଥିଲେ ସଢ଼ି ମରୁଥିବ
ନ ଚିହ୍ନିବେ ଦେଶ ସାରା ।

(୫) ଶଶିଭୂଷଣ ରଥଙ୍କ ଭଳି ଗଞ୍ଜାମର ଦେଶସେବୀ ଶରତ ଚନ୍ଦ୍ର ମହାପାତ୍ର ।

## ପାକିସ୍ଥାନ ରାଷ୍ଟ୍ରପତି
## ଭୁଟ୍ଟୋଙ୍କ ବୃଥା ବିଳାପ

ହିନ୍ଦୁ-ଲକ୍ଷ୍ମୀବାଈ ସନ୍ତାନ ମୁହିଁ ହିନ୍ଦୁ ଭାରତର ଥିଲି ଅରି
ସେହି ହିନ୍ଦୁସ୍ଥାନ ଧ୍ୱଂସ ସାଧନେ ବଜାଇଲି କେତେ ଯୁଦ୍ଧ ଭେରୀ
କୁତ୍ସିତ-ଭାରତ କୁକୁର ରକତେ କରିବାକୁ ମୋର ହାତ ଲାଲ୍
ହଜାର ହଜାର ସଇନ ପେଶିଲି ବାରବାର ମୁହିଁ ବାରବାର
ହଜାରେ ବରଷ କରିବାକୁ ରଣ କରିଲି ଗରବେ ମୁହିଁ ଠାଣି
ଚୀନ୍, ଆମେରିକା କରିଥିଲି ସାଥୀ ନୀରବ ଏବେ ସେ ବନ୍ଧୁଗଣ
କଏଦୀ ଖାନାରେ ସେହି ଭୁଟ୍ଟୋ ମୁହିଁ ଦେଢ଼ବର୍ଷ ଧରି ଗଲି ସଡ଼ି
ମୋର ହାତଗଢ଼ା ସେନାପତି ଜିଆ ପିନ୍ଧାଇଲା ମୋତେ ଖୁଣି ବେଢ଼ି
ଏହି କାରାଗାରୁ 'ମୁଜିବ୍'ରେ ମୁକ୍ତ କରିଥିଲି ମୁହିଁ ଏହି ହାତେ
ବିଦେଶୀ-ମୁଖିଆ କୁମ୍ଭୀର କାନ୍ଦଣା ହନ୍ତସନ୍ତ ଖାଲି କରେ ମୋତେ
ମୋ ପୂର୍ବ ଆଦେଶ ପ୍ରତିଧ୍ୱନୀ ଭଳି ମୋ ଚଳ-ଧମନୀ ମାତ୍ର ରକ୍ତ
ନିଗିଡ଼ି ଯାଉଚି ଏହି କାରା ବକ୍ଷେ ହସିଉଠେ ଆଜି ଫାଶିକାଠ
ଅକୃତଜ୍ଞ 'ଜିଆ' କଲା ପ୍ରତାରଣା ଜଳି ଯାଉଅଛି ମୋ ଶରୀର
ଶାସକ ପ୍ରାସାଦ ବଦଳରେ ଏବେ କାରାଗାର ରୁଦ୍ଧ-କାରାଗାର
ନିରୁପାୟ ମୁହିଁ ନିଃସହାୟ ଆଜି ପ୍ରତିହିଂସାରେ ମୋ ହୃଦ ଜଳେ
ରକ୍ତେ ହେଉ ଲାଲ୍ ପ୍ରିୟ ସିନ୍ଧୁଜଳ କହି ଯାଉଛି ମୁଁ ଶେଷ କାଳେ
କରମ ମୋହର ପ୍ରତିହିଂସା ଆଉ ଧରମ ମୋହର ପ୍ରତିଶୋଧ
ଆହେ ଭଗବାନ ନିର୍ଦ୍ଦୋଷ ମୁହିଁ ମୋର କାର୍ଯ୍ୟ ନୁହେଁ ଅପରାଧ ।



## ମୁଁ କିଏ ?

କିଏ ମୁଁ ଏ କଥା କିଏସେ କହିବ
  ମୋର ସ୍ଥାନ ଅବା କାହିଁ ?
ଅଭିମନ୍ୟୁ ପରି ଅଣ୍ଡାଳେ ବ୍ୟୂହରେ
  ବାଟ ତ ଦିଶଇ ନାହିଁ ।
ପୁରାଣ ଭାରତେ ଥିଲା ବହୁ ରାଜ୍ୟ
  ବହୁ ଭାଷା ଥିଲା ରହି
ଭାରତ ସଂସ୍କୃତି ବଂଚି ରହିଥିଲା
  କେବଳ ଧରମ ପାଇଁ
ଭାରତ ଭୂଇଁକୁ ମୁକ୍ତ କରିବାକୁ
  ବିଦେଶୀ କବଳୁ ଟାଣି
ଶତ ନର ନାରୀ ରକ୍ତ ବଳି ଦେଲେ
  ନିଜେ ଭାରତୀୟ ମଣି
ଦେଶର ପ୍ରାନ୍ତରେ ଏବେ ନିଆଁ ଜଳେ
  ଆଞ୍ଚଳିକ ଭାବେ ବୁଡ଼ି
ଭୋଟ ପାଇଁ କି ନେତା ରଚେ ଭେଦ
  ନିଜ ସ୍ୱାର୍ଥ ଅନୁସରି
ନୁହେଁ ମୁହିଁ ଗଣା ସ୍ଥାନ ସଂରକ୍ଷଣେ
  ମୋର ପରିଚୟ କୁହ
ମୋହର ଦେଶରେ ମୁହିଁ ଏବେ ପର
  କେଉଁଠି ପୋଛିବି ଲୁହ ?



## ବାବାଜିଙ୍କ ଖେଳା

ବୁଦ୍ଧ ଶଙ୍କର ଚଇତନ ଥିଲେ
ଏହି ଦେଶଟିର ଭଗବାନ
ଘର ଦ୍ୱାର ଛାଡ଼ି ନାଚି ବୁଲୁଥିଲେ
ଖୋଜି କାହିଁ ମିଳେ ନିର୍ବାଣ
ବୁଦ୍ଧ ଚେଲା ନିତି କହୁଥିଲେ ବୁଲି
ତ୍ୟାଗ କରିବାକୁ ସବୁ ମାୟା
ସବୁ ସୁଖ ଛାଡ଼ି ପବିତ୍ର ମନରେ
ଶୁଦ୍ଧ ରଖିବାକୁ ନିଜ କାୟା
ବଣ ଜଙ୍ଗଲର ଏହିଦେଶ ଏବେ
ଧରି ଅଛି ପୁଣି ନୂଆବେଶ
ଚରସ୍ ହ୍ୱିସ୍କି ବନି ଯାଇଅଛି
ଏବେ, ଚିଲମ ଓ ସୋମରସ
ନୂଆ ନୂଆ ପାଜି ଆଜିର ବାବାଜି
ବଲ୍କଲ ବନିଛି ସିଲ୍କ ଜାମା
ଭକତି ନାମରେ ଚଉପାଶେ ଜମି
ଚକ ଚକ କେତେ ନୂଆ ବାମା
ପୂର୍ବ ଶ୍ରେଷ୍ଠ-ନାରୀ ପରକାଶ ହେଲେ
ଗୁଇନ୍ଦା ବିଭାଗ କଲମରେ
ଜାଲ୍ ଠକାମିରେ ଆଇନ ଫାନ୍ଦରେ
ପୋଲିସ ଧରନ୍ତି ବାବାଜିରେ
ଜେଲ ଯିବା ଶୁଣି ଭକତେ କହନ୍ତି
ବାବାଜିଙ୍କର ଏ ନୂଆଲୀଳା
ବୁଝି ନ ପାରନ୍ତି ସାଧାରଣ ଲୋକେ
ବ୍ରହ୍ମ ପୁରୁଷଙ୍କ ସୂକ୍ଷ୍ମ ଖେଳା ।



## ସମ୍ପୂର୍ଣ୍ଣ ସମାଜ

ଆଗମନ ରୁଦ୍ଧ ଦ୍ୱାର    ଟେଷ୍ଟ ଟିଉବ ଦେହରୁ
କରକାର ମର୍ମସ୍ଥଳୀ    ଉଦ୍ଭବ ମାନବ ସନ୍ତାନ
ନଗର କଠିନ ଆତ୍ମା    ହୃଦୟର ପେଶୀ ପ୍ରବର୍ତ୍ତନ
ନିର୍ମମ ପାଷାଣ ବୁକେ    ଇଲେକ୍‌ଟ୍ରୋନିକ ଟେଲିଭିଜନ
ଆତ୍ମହତ୍ୟା କରୁଣ ଚିତ୍କାର    ବିଜ୍ଞାନର ବହୁ ଉତ୍କର୍ଷତା
ସର୍ପ ଓ ଭେକର ସୃଷ୍ଟି    ଜଳରୁ ବିଦ୍ୟୁତ୍ ଆହରଣ
ଝଡ଼୍-ଝନ୍‌ଜା-ବୃଷ୍ଟି    ମାନି ବନ୍ଧେ ବନ୍ୟା ନିୟନ୍ତ୍ରଣ
ଶୃଙ୍ଖଳିତ ବିଶୃଙ୍ଖଳା    ବାସୁକୀର ଘଟ ପ୍ରବର୍ତ୍ତନେ
ନିୟମରେ ବେନିଅମ    ମୂହୂର୍ତ୍ତକେ ସବୁ ହୁଏ ବୃଥା
ସୃଷ୍ଟି, ଶିଳ୍ପି ଅମର ଆତ୍ମାର    ନୂତନ ଏ ରାବଣ ସଭ୍ୟତା
ଦେବତାରେ ଆତ୍ମ ସମର୍ପଣ    ଧ୍ୱଂଶ ମୁଖେ ଧାଇଁ ଚାଲେ
ବେଦ-ମନ୍ତ୍ର ଧରାବନ୍ଧା ପନ୍ଥା    ପୁଷ୍ପକ ବିମାନ ପରି
ଈଶ୍ୱରବାକ୍‌ର ସୁଖାନୁସରଣ    ବୋହିବାକୁ ପୁଣି ସେଇ
ଲୀନ ନୁହେଁ ଶଙ୍କରାଚାର୍ଯ୍ୟର    କଳ୍ପିତ, ଅଶରୀର ଗାଥା
ମୋହତ୍ୟାଗୀ ନିର୍ଲିପ୍ତ ଡାକରେ    ବାଗ୍‌ଦେବୀର ପୂଜିତର
ମାର୍କସପନ୍ଥି ସର୍ବହରା ଡାକ    ଗଳାପଡ଼େ ପେନ୍ଥା ପେନ୍ଥା
ଶାନ୍ତି ନାମେ ହୁଙ୍କାର ଚମକ    ବ୍ୟର୍ଥତାର ନିଦର୍ଶନ
ସବୁ ହୁଏ ଓଲଟ ପାଲଟ    ନିଷ୍ଫଳ କପି ନିର୍ଗତ
ଅଶାନ୍ତିରୁ ଶାନ୍ତିର ସ୍ଫୁଲିଙ୍ଗ    କ୍ଲୀବ କ୍ଲେଦ ଉଗ୍ରୀର ସଂହାର
ଜଳଲକ ବୁଦ୍ଧ ଗାନ୍ଧି ସତ୍ୟ ଅହିଂସାରେ    ପୁରାତନ ନୂତନ ସଂଘର୍ଷେ
ହିଟଲରୀ ପ୍ରଭୁର ନିର୍ଘୋଷ    ପୁରାତନ ରୂପନିଏ ନୂତନର
ଋଷ-ମାର୍କିନର ଛକାପଂଝା    ବିଶ୍ୱବିଜୟୀ ସମାଜର ବୁକେ
ଆଟମ ରକେଟ ସ୍ପୁଟ୍‌ନିକ ଖେଳେ    ଚାଲିଛି ତାଣ୍ଡବନୃତ୍ୟ ଯୁଗଯୁଗ ଧରି
ଶୁଭ୍ରଳ କି ଶାନ୍ତିର କପୋତ    ସମାଜେ ପୂର୍ଣ୍ଣତା ଖାଲି
ଜଟାୟୁର ମୁମୂର୍ଷୁ ବାରତା    କାଳର ପ୍ରହର ।

# କୋଣାର୍କ ପଥର

(କୋଣାର୍କ ମନ୍ଦିରରୁ ବଡ଼ ପଥର ଖସି ଦୁଇଖଣ୍ଡ ହେବା ଉପରେ)

ପଥର ରୂପରେ ଦେବ ଯୁଗ ଯୁଗ ଧରି
କୋଣାର୍କ ସୂର୍ଯ୍ୟ ମନ୍ଦିର ରଖିଲ ଆବୋରି
କେଉଁ ଯନ୍ତ୍ର ବଳେ ତୁମେ ଉପରକୁ ଗଲ
କିଏ ତୁମେ ? ଏତେ ଦିନେ ତଳକୁ ଖସିଲ
ତୁମେ କି ପଥର ? ଜଣେ ସେବ୍ୟ ପୂଜ୍ୟ ଜନ୍ତୁ
ଯେ ମନ୍ଦିର ଗଢ଼ୁ ଗଢ଼ୁ ଚାଲିଗଲେ ସ୍ଥାଣୁ
ଛୋଳି ଗଢ଼ି ଯେ ମନ୍ଦିର ଚାଲିଛି ପ୍ରସ୍ତର
ମନ୍ଦିର ଗାତ୍ରରେ ରହି ହେଲେ ଜାତିସ୍ମର
ହେ ପଥର ! ଦେଖିଥିବ ଧର୍ମପଦେ ତବ
ଦେଖିଥିବ ଶିଳ୍ପୀଜନେ କାର୍ଯ୍ୟେ ଆତ୍ମହରା
ଦେଖିଛ କୃଷକ ସେନା କରବାଳ କରେ
ଦେଖିଛ ସାଧବ ଯାତ୍ରା ମହୋଦଧି ଜଳେ
କୋଣାର୍କର କାରୁକାର୍ଯ୍ୟ ସ୍ତମ୍ଭୀଭୂତ ନର
ଶତଘାତ ପ୍ରତିଘାତେ ସେ କଳା ଅମର
ଦେଶ ବିଦେଶରୁ ଆସନ୍ତି କେତେ ଯେ ଦର୍ଶକ
ତଥାପି ତା ସୁରକ୍ଷଣେ ସର୍କାର ବିମୁଖ
ପ୍ରତ୍ନତତ୍ତ୍ୱ ବିଭାଗର କର୍ମକୁଣ୍ଠ ଦଳ
ପର୍ଯ୍ୟଟନ ବିଭାଗର ସରକାଷ୍ଠ କଳ
ସର୍ବେ କି ଅଚଳ ହେଲେ ପାଷାଣର ପରି
ପବିତ୍ର ମନ୍ଦିର ଗାତ୍ରୁ ତୁମେ ପଡ଼ି ଟଳି
ଶାସନ କନ୍ଦଳ ଦେଖି ହେଲକି କାତର
ଆତ୍ମାହୁତି ଦେଲ ଆହେ, ମନ୍ଦିର ପଥର
ଓଡ଼ିଆଙ୍କ ଦୁର୍ଦ୍ଦଶା କି ପ୍ରାଣକୁ ବାଧିଲା
ତଳେ ପଡ଼ି ତୁମ ଛାତି ଦୁଇଫାଳ ହେଲା ।



# ବକୁଳ ବନର କ୍ରନ୍ଦନ

ମୋ ପତ୍ର ଗହଳ ସୁବାସ ବାସରେ
ଲୁଚି ଖେଳୁଥିଲେ ପିକ ରାଣୀ
ଚଉ ଫୁଲକାଇ ଗାଇ ବାଣୀ
ସେ ନଟ ନାଗର ବୈଂଶୀ ବଜାଇଲେ
ଗୁପ୍ତ ବୃନ୍ଦାବନେ ନାଚି ନାଚି
ମୋହର କୋଳରେ ରାସ ରଚି
ଏ ନବ ଯୁଗର ପନ୍ଥ, ଦେଶ ଗୁରୁ
ଏ ମୋର ବକ୍ଷରେ ଶିଶୁ ଧରି
ଗଢ଼ୁଥିଲେ ଦେଶ ଉଚ୍ଚ କରି
ଧରି ରଖିଥିଲି ମୋହର ଅନ୍ତରେ
ଗାନ୍ଧି ଗୋପବନ୍ଧୁ ଗୁରୁଦ୍ୱୟ
କେତେ ଏ ଦେଶର ଇତିହାସ
ସ୍ୱାଧୀନତା ପରେ ମୋ ଛାତି ଉପରେ
ଗୁଳିଲ ଏହି କି ଅନାଗ୍ନିର
ଶାସକେ ଖୋଳିଲେ ନାଳ ଧାରି
ଉତ୍କଳ ଗୁରୁର ସିମେଣ୍ଟ ଆସନୁ
ନେଇ ଇଟା ଖଣ୍ଡ ଖଣ୍ଡ କରି
ଦୁଆରେ ପାହାଁଚ ଦେଲି ଗଢ଼ି
ଛୁଆଅନା କୁଂଜ କେତକୀ ଉଦ୍ୟାନେ
ଚଳାଇ ଏହି କି ଲୀଳା ଭୂମେ
ପରିଣତ କଲ ମରୁଭୂମେ
କ୍ରନ୍ଦନ କରେ ମୁଁ ବକୁଳ କାନନ
ବକୁଳ ତମାଳ ଚିହ୍ନ ନାହିଁ
କାହାଗେ କହିବ ବ୍ୟଥା ମୁହିଁ ।



( ସତ୍ୟବାଦୀ )

# ଅୟି କେନ୍ଦୁପତ୍ର

ଅୟି ପଶ୍ଚିମ ଉତ୍କଳର ଅରଣ୍ୟ ନିବାସି !
ସୁଶ୍ୟାମଳ ତରୁ କୋଳେ ଉଠିଲ ଉଭାସି
ଶୈତ୍ୟ ବସନ୍ତ ପରଶେ କୋମଳ ଶରୀରେ
ବାସଚ୍ୟୁତ ହେଲ କି ଗୋ ଗିରିବାଳା କରେ
    ଲଭି ସେ କୋମଳ ସ୍ପର୍ଶ ଉଠିଲ ଉଲ୍ଲସି
    କୁଞ୍ଚିତ କବରୀ କୋଳେ ଗଲ 'କି ଗୋ' ଲସି
    ଆହାର ମୁଠାକ ପାଇଁ ବୋଝ ବୋଝ କରି
    କା' ଗୋଦାମେ ଗିରିବାଳା ଦେଲକି ଅଜାଡ଼ି
ବମ୍ବାଇ ବା କଚ୍ଛବାସୀ ଠିକାଦାର ଦଳ
ଶୋଷିନେଇ ଶୀର୍ଣ୍ଣ କଲେ କୋମଳ ଶରୀର
    ଛୁରି କଲୁଷରେ ଯେବେ ଖଣ୍ଡ ଖଣ୍ଡ କରି
    ଧୂଆଁ ପତ୍ର ଗେଁଜ ଗେଁଜ ଦେଉଥିଲେ ବଳି
    ମନେପଡୁଥିବ ତବ ସେହି ଦୂର ବନ
    ଶୁଭୁଥିବ ଗିରିବାଳା ଗୁଣୁ ଗୁଣୁ ସ୍ୱନ
ବଡ଼ ରୂପେ ବକ୍ଷେ ହେଲ ଗମି କେଉଁ ଦୂରେ
କୁଲି, ମୂଲିଆ, ଶ୍ରମିକ ମୁଖମଣ୍ଡଳରେ
ଅଗ୍ନି ସଂଯୋଗରେ ଯେବେ ଦହିଲ ଶରୀର
ଧୂମ୍ର ମାଳା ନାସାରନ୍ଧ୍ରେ ରଚୁଥିଲ ଖେଳ
    ଦୁସ୍ଥ, ଦୁର୍ଭାଗା, ବେକାର ଚୁମ୍ବନ ସମ୍ଭାର
    ଅୟି କେନ୍ଦୁପତ୍ର ରାଣୀ ବଡ଼ର ମେଖଳ
କିଏ ଦେଉ ଟଙ୍କା ଅବା ନେଉ କେଉଁ ଘାର
ଓଡ଼ିଶାର ରାଜକୋଷ ହେଉ ବା ଉଙ୍ଗୁର
ଦେଶ ବିଦେଶରେ ଭ୍ରମି ଫୁଟାଅ ଗୋ ହସ
ନିଆଶ୍ରୀ ଦୁଃଖୀ ଜନର ହେ ଚିର ଆଶିଷ

## ମଦିରା

ପୂର୍ବକାଳେ ତବ ନାମ 'ସୋମରସ'
ଋଷି ଆଶ୍ରମର ଗହନ ବନେ
ଯଜ୍ଞବେଦୀ ପରେ ଦେବ ଆରାଧନେ
ଭଜିଲେ ତୁମକୁ ସେ ମୁନିଜନେ
ଆଦିବାସୀ ଗ୍ରାମେ ତୁମେ ତ 'ସଲପ'
'ମହୁଲି' 'ହାଣ୍ଡିଆ' 'ଖଜୁରି ରସ'
ଚଣ୍ଡୀ ଦାନବନେ କନ୍ଦର କୁଟୀରେ
ଫୁଟାଇଲ ତୁମେ ଅଫୁଟା ହସ
ତବ ନାମ 'ସୁଧା' ଇନ୍ଦ୍ରଙ୍କ ସରଗେ
ଦେବଜନ ମନ ହରଣକାରୀ
ଗୀର୍ଜାର ଭିତରେ ଯୀଶୁଙ୍କ ରକତ
ସର୍ବ ପାପ ହର ହେ ମୋକ୍ଷକାରୀ
ମାନବ ତୁମକୁ କରୁଥିଲା ପୂଜା
ବନ୍ଧୁ ଆଶୀର୍ବାଦ ସନ୍ତକ ଭଳି
ରହୁଥିଲ ଦୂରେ ଦେବ ଗହଣରେ
ଏବେ କିଂପା ଘରେ ଆସିଲ ଚାଲି
ଏବେ ଘରେ ଘରେ ଜନ ବସତିରେ
ଭଦ୍ର ସମାଜରେ ଆସିଲ ପଶି
ତବ ପଦାଘାତେ କମ୍ପଇ ସମାଜ
ଲେପୁଛ ସମାଜେ କାଳିମା-ମସୀ
ତୁମ ଲାଗି ସାଧୁ ବନଇ ଅସାଧୁ
ତୁମ ପେନ ଘଟେ କେତେ କା ଘର
ତୁମର ନିଶାରେ ମାତାଲ ବନନ୍ତି
କେତେ ବଡ଼ଜନ, ବାଳୁତ ନର

କର ସ୍ମୃତି ନାଶ          କର ବୁଦ୍ଧି ଭ୍ରଂଶ
 କର ସୁଧୀଜନେ ବାତୁଳ ତୁମେ
ତୁମର ଆଘାତେ          ଚୂନା ହୁଏ ଆଶା
ଉଠେ ହାହାକାର କେତେ ଯେ ହର୍ମ୍ୟେ ।
ତୁମ ଅନାସ୍ଥର          ରୋକିବା ପାଇଁକି
କୋଶନ ଗାଇଲ ଅମରବାଣୀ
ଏ ଯୁଗ ମହାତ୍ମା          ବୁଝାଇଲ କେତେ
କାକୁତିରେ ଯୋଡ଼ି ତା ବେନପାଣି
ସବୁ ଜାଣି ଶୁଣି          ନ ବୁଝନ୍ତି ଜନେ
ଦିନୁଁ ଦିନ ବଢ଼େ ତୁମରି ଦାଉ
ଉପର ଦେଖାଣି          ସଭ୍ୟତା ନିୟମେ
ଗୁପତେ ବଢ଼ଇ ତୁମରି ଖାଉ
ବିଦେଶୀ ଠାଣିରେ          ସଚିବ ମହଲେ
ବ୍ୟବସାୟୀଙ୍କର କ୍ଲଅବ ଘରେ
ଢଳ ଢଳ ତୁମେ          ପିଆଲି ଭିତରେ
ଥଣ୍ଡା ଆଲମାରୀ ଚହଲ ପଡ଼େ
କମ୍ପିତ ଚରଣ          ହୁଏ ଥର ଥର
ବିଦେଶୀ ନାଚରେ ସଖୀରେ ଜାକି
ଜୀବନ୍ତ ହୁଅଇ          'ଓମର ଖାୟାମ'
ମନ ମତାଣିଆ ସୁରା ଓ ସାକୀ ।
ଗାନ୍ଧି ସରକାର          ନିଶା ନିବାରଣେ
ଯେତିକି ଯେତିକି ଶୁଣାନ୍ତି ସ୍ବନ
ନେତାଏ ସେତିକି          କରନ୍ତି ଛଳନା
ବ୍ୟାପିଯାଅ ତୁମେ ଦିନକୁ ଦିନ
ଚଉ ଭୁବନରେ          ଏ ସଭ୍ୟ ଚଳନ
କିଶୋର କିଶୋରୀ ଉଠନ୍ତି ଚେଇଁ
ତବ ଅଭାବରେ          ସେବନ୍ତି ବଟିକା
ସମାଜ ବନଇ ମଶାଣି ଭୂଇଁ



# ପିଆଜ ରାଣୀ

କଳିଯୁଗ ଦ୍ରୌପଦୀ ଗୋ, ହେ ପିଆଜ ରାଣୀ
ଚରପ୍ରଷ୍ଠ ପରିହିତା ଭୂତଳ ବାସିନୀ
ଖାଦ୍ୟ ପ୍ରଚଳନ ତୁହି ଲଙ୍କାର ଉର୍ଦ୍ଧରେ
ଖାଦ୍ୟ ଓ ଅଖାଦ୍ୟ ସବୁ ଠେଲୁ ଗଳ କକ୍ଷେ
ଚରଣ ସିଂ ସର୍କାର ବଜାରୁ ଠେଲିଲା
ଶୀତଳ ଭଣ୍ଡାରେ କେ ବା ଲୁଚାଇ ରଖିଲା
ଚନ୍ଦ୍ର କରିସିନ ତୁଲେ କାହିଁ ତୁ ଲୁଚିଲୁ
ଜନତାସବାପାର ପର ବିପ୍ଳବ ରଚିଲୁ
ହେ ପିଆଜ ! ତୋ ଅଭାବେ ପଡ଼ି ହାହା ରାବ
ତୋର ଚତାଦରେ ଲୋକେ ଡାକିଲେ ଲୋଚକ
ପିଆଜ ସ୍ଥାନ ପିଆଜ, ଚନ୍ଦ୍ର ସ୍ଥାନ ଚନ୍ଦ୍ରା
କରିସିନ ଅଭାବରେ ଅନ୍ଧକାର ଗାଆଁ
ଦ୍ୱାପରରେ ଦ୍ରୌପଦୀଙ୍କୁ ଦେଇ ଅପମାନ
ଭାରତ ଯୁଦ୍ଧେ କୌରବେ ହୋଇଥିଲେ ମ୍ଳାନ
ଏ ଯୁଗେ ତୋତେ ଅଭାବ, ଅପମାନ କରି
ଭୋଟ ଯୁଦ୍ଧେ ଶାସକେ ତ ପଡ଼ିଗଲେ ହାରି
ଗାନ୍ଧୀ ନାମି ଯାଉଥିଲେ କାରାଗାର ପୁରେ
ସଗର୍ବେ ଫେରି ତ ଥିଲେ ଶାସକ ମନ୍ଦିରେ
ଧନୀ-ଗରିବ ଭେଦରେ ସବଜନୀ ଦ୍ରୁତା
କ୍ଷୀଣ ରକ୍ତବର୍ଣ୍ଣେ ତୁହି ସତତ ଶୋଭିତା
ଏତେବେଳେ ନ ଡରି ତୁ କାହାର ଶାସନେ
ଦେଖାଉଅ ରାଜଦାଣ୍ଡେ ପୁଲକିତ ମନେ
ଚୁମ୍ବନ ପରଶ ତୋର ପାଇ ଜନେ ମୁଖେ
ସେ ଶାସନ ଆସୁ ପଛେ ଥା'ନ୍ତୁ ମନ ସୁଖେ ।



( ପ୍ରଧାନମନ୍ତ୍ରୀ ଚରଣ ସିଂହଙ୍କ ସମୟରେ ପିଆଜ ଅଭାବ
ଓ ନିର୍ବାଚନରେ ପରାଜୟ ଉପରେ ଲିଖିତ )

# ଚୋରୀରେ ହଟହଟା

ଘରେ ଛଅପ୍ରାଣୀ କୁଟୁମ୍ବ ଉପାସ ସତ୍ୟ ଓ ଅହିଂସା ମନରେ ଧରି
କେତେ କାଳ କଏ ମାରିବ ରହିବ ସିଧାପନ୍ଥା ଯିନା କରିବା ଚୋରି
ସବୁ ତ ସବୁରି, ସାମ୍ୟବାଦୀ ଦେଶେ ଜମି, ଧନ, ଯାଏ କଲମ ଗାରେ
କା ବଳକାଧନ କାମେ ଲଗାଇଲେ ଚୋରି ବୋଲି କଏ ଏକାଳେ ଧରେ
ଓଜନଆ ଥଳି ଆଣିଛି ବସ୍‌ରୁ ଗୁଡ଼ି ତା ସ୍ଥାନରେ ନିଜ ପୁଟୁଳି
ଥିବ କେତେ ଧନ ବିଗୁରିଇ ମନେ ହନାକେତେ ପିଲ୍ ପିବେ ତ ଚଳି
ଦେଖିନି ମାଲିକ ଜାଣିନି ପୁଲିସ୍ ପଡ଼ିନି ସେଥିରେ କାର ନଜର
ପ୍ରଥମ ଚୋରିରେ କଣଅଛି ଯିଏ ସୁହାଇବ ତାକୁ ଚୋରି ବେପାର
ଘରଯାକୁ ଡାକି ଖୋଲି ସେ ବୁଜୁଳି ମୁହୂର୍ତ୍ତକେ ସିଏ ହୋଇଲା ଥକ୍‌କା
ମଣିଷ ଖପୁରି ମଣିଷର ହାଡ଼ ଉରି ତା ଘରଯା ଗୁଡ଼ିଲା ଡକା
କୁଆଁରି ହାଡ଼ କି ମନୁଷ ମୁଣ୍ଡ ସେ କ୍ଷଣକେ ସଭିଙ୍କୁ ଦେବ ବା ଗିଳି
କଏ ସେ ଗୁଣିଆ ସଙ୍ଗେ ନେଉଥିଲା ଏପରି ଅଜବ ଗୁଣି ପୁଟୁଳି
ହଅଁଙ୍କ ପାଖରେ ପଡିଲା ଅଧିଆ ଗ୍ରହ ଶାନ୍ତି ପାଇଁ ଉପାସେ ରହି
ହଅଁଙ୍କ କାଳେସୀ ଆଦେଶିଲା ତାକୁ ଫେରାଇ ଦେବାକୁ ତୁରନ୍ତ ଯାଇ
କାଳେଣୀ ଆଦେଶେ ପ୍ରାୟଶ୍ଚିତ ପାଇଁ ଦରଣ୍ଡି ବୁଜୁଳି ପାଇ ସେ ଖାତା
ଗୁଣିଆ ଠିକଣା ଠାବ କଲା ଶେଷେ କପରି ଭେଟିବ କଲା ସେ ଚନ୍ତା
ବୁଜୁଳିଟି ଧରି ନିର୍ଜଳା ଉପାସେ ସହରକୁ ଯାଇ ଭେଟିଲା ଶେଷେ
କହିଲା ହେ ବାବୁ ଭୁଲ ହୋଇଥିଲା ନିଅ ଏ ବୁଜୁଳି ଆଣିଛି ପାଶେ
ପ୍ରଥମ ବାର୍ଷିକ ମେଡ଼ିକାଲ ଛାତ୍ର ପାଇ ତାର 'ହାଡ଼' ହରଷ ମନେ
ଧନ୍ୟବାଦ ଦେଇ ଫେରାଇଲା ତାକୁ ଚୋର ଲେଉଟିଲା ଉଶ୍ବାସ ପ୍ରାଣେ ।

●

## ବସନ୍ତ ଯାଇଛି ହଜି

ବସନ୍ତ ଯାଇଛି ହଜି
ପଞ୍ଚତାରକାର ହୋଟେଲ ପ୍ରାଙ୍ଗଣେ
ପ୍ଲାଷ୍ଟିକ ଫୁଲ୍ ସାଜି
ସୁଷମା ଯାଇଛି ହଜି

ବସନ୍ତ ଯାଇଛି ହଜି
ଶୀତତାପ ସଂଯତ ଶୀତଳତା ଆଗେ
ବ୍ୟଞ୍ଜନର କରବାଜି
ମଳୟ ପଡ଼ିଛି ଭାଜି

ବସନ୍ତ ଯାଇଛି ହଜି
ବିଦେଶୀ ନାଚରେ ମଦ୍ୟପ ଗହଳେ
ତାନପୁରା ଉଠେ ବାଜି
କୋକିଳ ତ ମୂକ ଆଜି

ବସନ୍ତ ଯାଇଛି ହଜି
ମୟୂରର ନାଚ ହଜିଛି ଜଙ୍ଗଲେ
ଡିସ୍କୋ ନାଚ ଉଠେ ଗର୍ଜି
ଟି.ଭି. ନାଚେ ଲାଗେ ବାଜି

ବସନ୍ତ ଯାଇଛି ହଜି
ମଧୁପର ମଧୁ ଆଉ ନାହିଁ ଲୋଡ଼ା
ପରାଣ ଯାଉଛି ହଜି
ବିଷପୁରା ଜନେ ଭଜି ।

ବସନ୍ତ ଯାଇଛି ହଜି
ସୌନ୍ଦର୍ଯ୍ୟର ପାଇଁ ଅଗୁରୁ ଚନ୍ଦନ
ଲୋଡ଼ାନାହିଁ ଆଉ ଆଜି
ପାଉଡ଼ରେ ମନ ମଜି

ବସନ୍ତ ଯାଇଛି ହଜି
ପ୍ରେମର ନାମରେ ନଗ୍ନ ବ୍ୟଭିଚାର
ସମାଜ ପଡ଼ୁଛି ଭାଜି
ଉଚ୍ଛୃଙ୍ଖଳତାରେ ମଜି

ବସନ୍ତ ଯାଇଛି ହଜି
କଦମ୍ବ ମୂଳର ବଂଶୀ ଆକର୍ଷଣ
ଲେଖୁଛି ଧର୍ଷଣ ପଂଜି
ଶାଳୀନତା ଯାଏ ହଜି

ବସନ୍ତ ଯାଇଛି ହଜି
ଚକୋର ଚକୋରୀ ଖୁସି ମରମର
ଟି.ଭି. ପ୍ରଦର୍ଶନେ ଆଜି
କୋମଳତା ଯାଏ ହଜି

ବସନ୍ତ ଯାଇଛି ହଜି
ବିଦେଶୀ ଶିଷ୍ଟର ଅନୁକରଣରେ
ସଂସ୍କୃତି ପଡ଼ୁଛି ଭାଜି
ହସୁଛି ପଛରେ ପାଜି ।



## ବେକାର ଛବି

ଭୁରୁରୁ ଭୁରୁରୁ ଲୁଖୁର କେଶ ତଳେ
ଶୁଖିଲ ଶୁଖିଲା ବିବର୍ଣ୍ଣ ମୁହଁ
ପଶିଲା ପଶିଲା ଗାଲର ଉପରେ
ରୁଡ଼ିଆ ରୁଡ଼ିଆ ଲୋମ ସମୂହ

ଗାତୁଆ ଗାତୁଆ ଆଖି ଭିତରେ
ଜଳ ବିହୀନ ଚକ୍ଷୁର ଡୋଳା
କାଳିଆ କାଳିଆ ଓଠ ଉପରେ
ବିଡ଼ିର ଧୂଆଁ ରଚଇ ଖେଳା

ପୁରୁଣା ମସିଆ ଛିଣ୍ଡା ଜାମାର
ବୋତାମ ଯାଇଚି ଗୃଳି
ଇସ୍ତ୍ରି ହୀନ ପ୍ୟାଣ୍ଟ ଦେହରୁ
ଅର୍ଥହୀନ ପକେଟ ଯାଇଛି ଖୋଲି

ମୁଣ୍ଡରେ ମୁଣ୍ଡେ ହତାଶା ଗୁମ୍ଫା
ହାତରେ ଫୁଲାଏ ଡିଗ୍ରୀ
ଖଣ୍ଡିଆ ଯୋତାକୁ ଘୋଷାରି ଚାଲଇ
ନଜରକୁ କରି ବନ୍ଦୀ

ଭରି ହୃଦୟରେ ଅନ୍ୟମନସ୍କ ଯେ
ଦେଖି ନ ପାରଇ ବାଟ
ଏ ଯୁଗର ସେ ପାଠ ପଢ଼ୁଆ
ଚାକର ବିହୀନ ପୂର୍ବତନ ଛାତ୍ର ।



## ବିଦ୍ରୋହୀ ଭୃଣ

ରୁକ୍ଷ ହିମ ସମାଜ ବକ୍ଷରୁ
ଅହରହ ଗଡ଼ୁଥିଲେ
ଭୟଙ୍କର ନିଦାରୁଣ ଶୀଳା
ମାଡ଼ିଦେଲା ଭୃଣର ଶାବକ

ରୋଧିବାକୁ ଶୀଳାପଥ
ଜାଗେ କେତେ ଭୃଣ ଶିଶୁ
କଂଠେ ଭରି ପ୍ରତିବାଦ
ଅଗ୍ନିଶିଖା ଧରି ତାର ବୁକେ

ତାତେ ନ ନିଷ୍ଠୁର ଶୀଳା
ଦ୍ରବେ ନାହିଁ ନିଷ୍ପେଷିତ ଲୁହେ
ଆଶାର ପାଉଁଶ ଦଳ
ଗଡ଼ୁଥିଲେ ପିଚ୍ଛିଳ ପଥରେ

ଅବୁଝା ବିଦ୍ରୋହୀ ଭୃଣ
ଲଏଁ ନାହିଁ ଖାଦ୍ୟ ଅନଟନେ
କାଉଁଖିଆ କାଠ ପରି
ଡାକି ବୁଲେ ଦିଆଲି ମଶାଲେ

ମୃଗ ଭଳି ମିଶେନି ଦଳରେ ସିଏ ।
ଯୂଥ ସଙ୍ଗେ କୁଦା ମାରି
ଏଡ଼ିବାକୁ ଯମ ଭୟ
ଅନାହୂତ ବ୍ୟାଘ୍ର ଆକ୍ରମଣେ

ନିଜେ ପିନ୍ଧି ନିଜ ଜନ୍ମ ଟୀକା
ଉଦ୍‌ଗାରି ବିଷର ସ୍ରୋତ
ଲୁଚି ଛପି ବୁଲେ ସିଏ
ଜନାକୀର୍ଣ୍ଣ ବନେ

ପିଂପୁଡ଼ି ପରି ସାଇତି—
ରଖେନାହିଁ ଖୁଦ କଣି ମୁଠେ
ଅକାଳରେ ଦେବାପାଇଁ ଖୁଦ ଯାଉ
ତାର ପିଲା ମୁଖେ

ବାଇଆ ଚଢ଼େଇ ଭଳି
ଗଢନ୍ତି ସେ' ମୃଦମଗ୍ନ ବସା
ନମାନି ଝଡ଼ ବରଷା
ଦୋଳୁଥିବ ଯହିଁ ନର୍ଭୟରେ

ବାନ୍ଧେନ ସେଭଳି ସାଥୀ
ରୋଗେ ଶୋକେ ଉପାସରେ
ଦୂରୁ ଯିଏ ଦେବ ଆଣି
ଆହାରରୁ ଢୋକେ

ଖାଦ୍ୟହୀନ ବାସହୀନ
ଜୀବନ ସମ୍ମୁଖେ
ବୃଥା ଗର୍ଜନେ ତର୍ଜନେ
ଦୁନଆକୁ ଉବୁକାଇ ବକେ,

ବନ୍ଦର ବୀଣାଧର
ପାରେନ ସେ ଗାଇ
ଶାସକର ସ୍ତୁତି ଗାନ
ସ୍ତାବକର ମେଳେ

ଓଲଟି ସଭିଙ୍କୁ ଶୋଧି
ଦରବାର ଦୁଆରରୁ
ଫେରିଆସେ ରକ୍ତ ହସ୍ତେ
କିଂବା ପିନ୍ଧି ଲୌହର ଶୃଙ୍ଖଳେ

ଶତ ଶତ ଅଶାନ୍ତ ବିଦ୍ରୋହୀ
ଯାଉଛନ୍ତି ନିତ ଲଭି
ତଥାପି ଫେରନ୍ତି ସିଏ
ଯୁଦ୍ଧ ପାଇଁ ଏ କ୍ରୂର ଜଗତେ

ସହିବାକୁ ଦୁନଆଁର ଜ୍ୱାଳା
କରିବାକୁ ପ୍ରତିରୋଧ
ଅଗ୍ନିଗିଳା ଦାରୁଣ ସମାଜେ
ଗାଇ ଗାଇ ମରଣ ସଙ୍ଗୀତେ ।

●

# କବିତା କମଳ

ମଣିଷ ବୁକୁର ତେଜ
କାଗଜ କଲମେ ଆଙ୍କେ ଯେଉଁ ଛବି
ତାକୁଇ କବିତା କହୁ
ସମାଜର ମର୍ମକଥା
ଆଖି ଖୋଲି ଦେଖି ଲେଖି ଚାଲିଥିଲେ
ସାହିତ୍ୟ ଟେକଇ ମଥା
ସେପରି କବିତା ଲେଖା
ଯୁଗ ଯୁଗ ଧରି ଧମନୀ ଭିତରେ
ଟାଣେଇ ସ୍ପନ୍ଦନ ରେଖା
ଦାନବ ସଙ୍ଗରେ ରଣ
ସଂଘର୍ଷ ରଚେ କଲମ ମୁନରେ
ବିପ୍ଳବର ତାହା ପ୍ରାଣ
ଶତ ଶତ ତରବାରି
ହାତରୁ ଖସିଛି ରଣ ପ୍ରାଙ୍ଗଣେ
ଲେଖାଠୁଁ ଯାଇଛି ହାରି
କବିତା ରାଜ୍ୟରେ ଆଜି
ଆଧୁନିକତାର ଆବରଣ ତଳେ
ସ୍ୱାର୍ଥଘଣ୍ଟି ଉଠେ ବାଜି
ସଂସ୍କୃତିର ନାମେ ଏବେ
ଅପସଂସ୍କୃତିର ଜୁଆର ଛୁଟିଛି
ଦେଶ ମୂଳଦୁଆ ଦବେ
ପଂକିଳ ସମାଜ ବୁକେ
ପ୍ରସ୍ଫୁଟିତ ହେଉ କବିତା କମଳ
ଚମକାଇ ଭବ ଲୋକେ ।



# କାଳି ଓ କଲମ

ଯୁଗ ଯୁଗ ଧରି — କେତେ ଯେ ତରଙ୍ଗ
ସମାଜ ବୁକୁରେ ଉଠେ
ତାକୁ ରୂପ ଦିଅ — ହେ କାଳି କଲମ
ତୁମେ ତ ଜଗତ ବୁକେ
ଦୁଧାର ଅଟେ — ପାବକ ଲେଖନୀ
ରୁକ୍ଷ ଅବା ରସାଣିଆ
ଷଡ଼ରସ ତୁମେ — ସୃଷ୍ଟି କରି ପାର
ନଚ୍ଚଇ ତରୁଣ ହିଆ
ତରୁଣ ତରୁଣୀ — ଗୋପନ ଚିଠାଉ
ଦାମ୍ପା ଜନର ଚିଠି
ସରକାର ଘର — ଗୋପନ ଫାଇଲ
ବିଟଗଲପୁର ନଥି
ସ୍ପନ୍ଦନ ସୃଷ୍ଟି — ତୁମରି ଗାରରୁ
ସବୁ କଥା ତୁମେ ଲେଖ
ହେଉ ଇତିହାସ — ହେଉ ବା ବିଜ୍ଞାନ
ସବୁତ ସାଇତି ରଖ
ବଗୃରକ ହାତ — କଲମ ଗାରରେ
ଶାସକ ଆସନ ଟଳେ
ଜନ ଜାଗରଣ — ନଦୀର ସ୍ରୋତରେ
ଶୀର୍ଷ ନେତା ବୁଡ଼ମରେ
ଧର୍ମରେ ଗରବ — ଗରବରେ ଧର୍ମ
ମୂକ ମୁଖେ ଦିଅ ଭାଷା
ଏ ଭବ ସାଗର — ମାନବ ସମାଜେ
ତୁମେ ହିଁ ଆଶଙ୍କା-ଆଶା ।



# ଭୂ-ଗୋଲ୍

ଛପଛପିଆ ଆକାଶ ଦେହରେ
ଫୁଲଟିଏ ସିଏ
ଘୂରି ବୁଲେ କାହିଁକି
ତା ସଂଗେ ଘୂରି ବୁଲେ
ଅସଂଖ୍ୟ ମୁଣ୍ଡର
ଝିପୁଲି ଦଳ
ନୋଳା ନୋଳା
ନଳାପୋଙ୍କ ପରି
ସାଲୁବାଲୁ ହୋଇ
କୁଆଡ଼ୁ ଆସେ କୁଆଡ଼େ ଯାଏ
କାଂଭୁ ଘର ତାର
ବୁଲୁଥାଏ ।
ଆଜି ଆମେ ତାକୁ କହୁ
ମଣ୍ଡଳ
ଅଲ୍‌ଟ୍ରା ମଣ୍ଡଳ
ଆଗର ବଡ଼ ଆଖି
ପିନ୍ଧିଥିଲା
ସେଇ କାନଫୁଲ

ଆଦି ମାନବୀ ବୁଲୁଥିଲା
ସେଲ୍ପପର ଛୁଞ୍ଚ ଦେଖାଇ
ବେଶ୍ ବେଶ୍ ଏବର ଝପଲେଶ୍
ଆଜି ଯେଉଁ ଛନ୍ଦ
ଆମେ ଫୋପାଡ଼ ଦେଉ
ମନରୁ ଉପାଡ଼ ଉପାଡ଼
ହରେକ କିସ୍ମ ହରେଲ୍ମା ପରି
ପୁଜୁଣି ସେ ଫୁଟି ବାହାରିବ
ଏମିତି ମିଶିସିପି କୂଳରେ
ତୁ ପୁଜୁଣି
ନେବୁ ତାକୁ ହାତ ବଢ଼ାଇ
ସାଉଁଟି ସାଉଁଟି
ସେଇ ତୋ ମାଆ ପୃଥିବୀ
ଆକାଶରେ ଖାଲି
ଧିରି ଧିରି ବୁଲୁଛି
ତୁ ବୁଲିବୁନି ତ ଆଉ କଅଣ କରିବୁ
ବେଶ୍ ବେଶ୍ ମନ
ବୁଲ୍ ତୁ ବୁଲ ।

## ବିପ୍ର କାଶୀନାଥ

ବଦଳୁଛି ଦେଶ ବଦଳଇ ବେଶ
ବଦଳେ ମଣିଷ ମନ
ଶୁଣିଲେ ହସିବେ ଏବକାଳ ଲୋକେ
ଥିଲେ ତ ଏପରି ଜନ
ନୈଷ୍ଠ ବ୍ରହ୍ମଚାରୀ ବିପ୍ର କାଶୀନାଥ
ଗୁଣୁ ଗୁଣୁ ବେଦ ବାଣୀ
ସକାଳରୁ ସଞ୍ଜ ଦେବ ଉପାସନା
ଚିର ନିର୍ଲିପ୍ତ ଗୃହିଣୀ
ଘରଦ୍ୱାର ସବୁ ସମର୍ପି ଝିଅରେ
ସେ ଚିର ସନ୍ନ୍ୟାସ ବ୍ରତ
କାଶୀଧାମୁ ଫେରି ଗ୍ରହଣ କରିଲେ
ପଣ୍ଡିତ ସେ କାଶୀ ଧାମ
ସଙ୍ଗେ ରହିଅଛି ସୁନ୍ଦର ବାଛୁରି
ଗୋମାତା ସୁଧାର ଅନ୍ତ
ଦିନେ ବିପ୍ରବର ଅତ୍ୟନ୍ତ କାତର
ମୁଖରୁ ଲିଭିଛି ଜ୍ୟୋତି
ଗାଆଁ ମୁଣ୍ଡେ ଥିବା ଗଉଡ଼ ପାଇରେ
ଥକ୍କା ମାରି ହେଲେ ଠିଆ
'ଆନନ୍ଦ' ଗଉଡ଼ ଆଗେଇ ଆସିଲା
ଦେଖି ସେ ଗାଈ ଓ ଛୁଆ
କହିଲେ ପଣ୍ଡିତେ ଶୁଣ ହେ ଗୋପାଳ
ଆଜ ମୋର କାଳ-ଦିନ
ଏଇ ଗାଆଁ ମୁଣ୍ଡ ଇଷ୍ଟେସନ ମାଷ୍ଟ୍ରେ
କଲେ ମୋତେ ଗୋରୁ ଦାନ

ଦାନ ଧନ ଏହା            କି କରିବ ତାହା
ଦୂରେଇ ପାରିବ ନାହିଁ
ଗୋମାତା ଚାହିଁବେ   କେତେ କେତେ ସେବା
କପଟ କରିବ ମୁହିଁ
'ଗୋମାତା' ସେବାରେ    ହେଲେ ବ୍ୟତିକ୍ରମ
ପଡ଼େ ଦେବ ଅଭିଶାପ
ଏ ବାଟଦେ କାହିଁ            ପକାଇଲେ ବିଭୂ
କଲ ମୁହିଁ କେଉଁ ପାପ
କହିଲ୍ ଗୋପାଳ            ଭାବନା କାହିଁକି
ବିକଲେ ତ ଦୋଷ ନାହିଁ
ତାହା ପଣ୍ଡିତଙ୍କ            ମନକୁ ପାଇଲ୍
କହିଲେ ନିଅ ଏ ଗାଈ
ମୋ ପାରିଶ୍ରମିକ            ଏ ଘାସ ବିଡ଼ାକ
ମିଶି ହେଲ୍ ଆଠଅଣା
ଆଠଅଣା ଦେଇ            ଉଦ୍ଧର ହେ ମୋତେ
ଜଂଜାଳ କର ମୋ ଊଣା

ପୁଲିସ ଦାରୋଗା            ପାଇ ସେ ଖବର
ଧରି ଗୋପାଳକୁ ସଂଗେ
କହିଲ ପଣ୍ଡିତେ            ଫିକର ନ କର
ଠକକୁ ଦଣ୍ଡିବୁ ଆମେ
ଉପରକୁ ଚାହିଁ            କହନ୍ତି ଗୋସାଇଁ
କାହାକୁ ଠକିଛି କିଏ
ମୋତେ ତେବେ ଧର      ଠକିଛି ଗୋପାଳେ
ଦେଇ ତ ଜଂଜାଳଟିଏ ।



# ସତ୍ୟବାଦୀ ମଣିମା

ହାତେ ବନ୍ଧା ଘଂଟା    ଲଇଁଥିଲା ଅଣ୍ଟା
ଫର କଲମଟି    ଅଣ୍ଟାରେ ଖୋସି
ମନ୍ଥର ଗତିରେ    ଜୀବିକା ଆଶାରେ
ପଛେ ହାତ ରଖି    କରନ୍ତି ଗତି
ଡାକ ଘର ଦ୍ୱାରେ    ସାହ୍ନିଘଡ଼ି କରେ
ଖଟକାୟୁ ବୃଦ୍ଧ    ପଡ଼ନ୍ତି ବସି
ନିରକ୍ଷର ଜନେ    କରନ୍ତି ସାହାଯ୍ୟ
ଠିକଣା, ଷ୍ଟାଉ    ହାତରେ ଲେଖି
କସ ବା ପଇସା    ମିଳେ ସେ ବେପାରେ
ଉଆସେ ପୋଇଲ    ରାଣୀ ଥାଆନ୍ତି
ବଜାର ସଉଦା    କିଣୁଥିଲା ବେଳେ
ଦୋକାନୀ ଜଣାଏ    ନମ୍ର ପ୍ରଣତି
ପୁରୀ ରାଜବଂଶ    ମାଟିର ଉଆସ
କେଉଁ ଅଭିଶାପେ    ହେଲେ ଏପରି
ନଥିଲା ମହିମା    କିଏ ସେ ମଣିମା
ଜାଣିବାକୁ କେହି    ନ କରେ ଅଳି
ସତ୍ୟବାଦୀ ରାଜା    ଉଡ଼ାଇଲେ ଧ୍ୱଜା
ଗୋପାଳେ ଆଣିଲେ    ବକୁଳ ବନେ
ଇନ୍ଦ୍ରଦ୍ୟୁମ୍ନ ପରି    ଅହଂକାର ଛାଡ଼ି
ସେ ବର ମାଗିଲେ    ଉଦାର ମନେ
ରଜାଙ୍କର ପରେ    ସେ ଦାସୀ କୁମରେ
ମଣିମା ପଦରେ    ନାମକୁ ଲେଖା
ମଣିମାଙ୍କ ରାଣୀ    ହେଲେ ବନ୍ଧ୍ୟା ପୁଣି
ଘୋଟିଗଲା ଆସି    କାଳିମା ରେଖା
ରହିଛି ମନ୍ଦିର    ନାହିଁ ରାଜବଂଶ
ମଣିମା କାହାଣୀ    ସ୍ମୃତିର ସ୍ତୂପ
ସେ ରାଜ ଉଆସ    ମାଟିରେ ମିଶିଛି
ବିଡ଼ମ୍ବିତ ଆଜ    ସେ ଇତିହାସ !

●

## ଡଆଢ଼ ମଉସା

ଦେଖାନାହିଁ ରାଗରୋଷ ସବୁବେଳେ ହସ
ବୋଲନ୍ତି ସମସ୍ତେ ତାଙ୍କୁ ନକଲି ନବସ
ସମସ୍ତଙ୍କର ମଉସା ସବୁରି ସେ ପ୍ରିୟ
ସଭିଙ୍କୁ ଥଟ୍ଟା ଟାପର ସଭିଠାରେ ସ୍ନେହ
ପର ଆପଣାର ଭାବ ନାହିଁ କାହାଠାରେ
ବସାଉଠା ତାହାଙ୍କର ସମସ୍ତଙ୍କ ଘରେ
ସବୁରି ଗୁଲଚଲନ ପରଖି ପରଖି
ହସାନ୍ତି ସେ ଜନତାକୁ ନାନାକଥା ଯୋଖି
କାଳିଆ ଗୋବିନ୍ଦ ମିଶ୍ର ପେଟମରା ରୋଗୀ
ଅସ୍ଥି କଂକାଳ ଶରୀର ନାନା ରୋଗ ଭୋଗି
ଗାତ ଆଖି, ଦାଗ ମୁହେଁ ଖୁଣ୍ଟାଗୋଠା ଦାଢ଼ି
ସୌନ୍ଦର୍ଯ୍ୟ ପରଖୁ ଥିଲି ସବୁ କାର୍ଯ୍ୟ ଛାଡ଼ି
ଦର୍ପଣରେ ନିଜ ମୁହଁ ଦେଖୁଥିଲି ହସି
ପଛରୁ ମଉସା ଗଲେ ଅଳ୍ପ ଲର୍ଯ ଲସି
ତାଙ୍କ ଛବି ଦେଖି ମିଶ୍ରେ ପଡ଼ିଲେ ଚମକି
କହିଲେ ‘ଶୁଣ ମଉସା ମୁହିଁ ଯା କହୁଛି’
ମୋତେ ଅସୁନ୍ଦର ବୋଲି କହୁଛନ୍ତି ଲୋକେ
ମୋଠାରୁ ଅସୁନ୍ଦର ଅଛନ୍ତି ତ ଥୋକେ
ମୋର ମୁହଁ ଦେଖି ମୁହିଁ କରୁଅଛି ସ୍ଥିର
ଛଅଷଡ଼୍ରୁ ମଧ୍ୟେ ମୁହିଁ ସବୁଠୁ ସୁନ୍ଦର
ମଉସା କହିଲେ ହସି ବୁଝିଲି ତୋ ମତ
ସବୁକଥା ଏ ସଂସାରେ ହୋଇପାରେ ସତ
ତୋର ରୂପ ଏହିପରି.ଧନ୍ୟ ଷଡ଼୍ରୁ ତୋର
ଅସଲ ବାଛିବା ଲୋକ ଜାଣ ତୋ ଶଶୁର

ଏହିପରି ନାନାକଥା ମୁଖେ ତାଙ୍କ ଶୋଭା
ଦେଖିଲକ୍ଷଣି ତାହାଙ୍କୁ ବର୍ଣ୍ଣିଯାଏ ସଭା
ଗପରେ ମାତିଲେ ସିଏ ଭୋକ ଶୋଷ ଭୁଲି
ଅନର୍ଗଳ ଗପୁଥାନ୍ତି ଘଣ୍ଟା ଘଣ୍ଟା ଧରି
କଥା କହୁ କହୁ ଏଣେ ବୁଡ଼ିଯାଏ ବେଳ
କପରି ରଖିବେ ସିଏ ଘରର ଖବର
ତିଆଡ଼ି ମଉସାଙ୍କର ଦୁଃଖୀ ପରିବାର
ଦେଖିନ କଏ ତାହାଙ୍କୁ ଚିନ୍ତା କରିବାର
ତେଲ ଲୁଣ ପାଇଁ କେବେ ଦୋକାନେ ବାହାରି
ଥରେ ଥରେ ଦୁଇଦିନେ ଆସନ୍ତି ତ ଫେରି
ଘରେ ଗୃହିଣୀ ରୋଷରେ କରିବା ଗର୍ଜନ
ଦୈନନ୍ଦିନ ଘଟଣା ତ ଶୁଣିଛନ୍ତି ଜନ
ସେ କହନ୍ତି ଗୃହିଣୀଟି ତାଙ୍କର ସୁଧାର
କାହା ବିରୁଦ୍ଧରେ କେବେ ନ ଉଠାନ୍ତି ସ୍ୱର
ପଖାଳ ଶାଗ ଖାଇଲେ ଘରକୋଣେ ବସି
ଖେଚେଡ଼ି ଓ ରୁଟିଭଜା କହନ୍ତି ସେ ହସି
ସୁଜନେ ବୁଝ ଏଥିରୁ ତାଙ୍କ ଘର କଥା
ଏହିପରି ଥିଲେ ଆମ ନିର୍ଲିପ୍ତ ମଉସା ।



# ଅବଧାନଙ୍କ ଘଣ୍ଟାନ୍ତର

ଯିଏ ବସୁଥିଲେ ଗୁହାଳ ପିଣ୍ଡାରେ ହାତେ ଧରି ଏକ ଲମ୍ବାବେତ
ପହଂଚଲେ ଗୃଷ୍ଟ ପୁରୁଣା ଝଙ୍କରେ ବଢ଼ାଇଲେ ତାର ଦୁଇହାତ
ଶୂନ ଏକ କରି ପିଟି ଯାଉଥିଲେ କଅଁଳ ହାତକୁ ଗଣି ଗଣି
ଉପସ୍ଥାନ ବହି ନଥିଲା ତ କିଛି, ତାଙ୍କ ତୁଣ୍ଡ ଥିଲା, ବହି ପୁଣି
ଗାଆଁ ମଣ୍ଡପଟି ଗୁହାଳର ଘର, ମାଟିପିଣ୍ଡା ଆମ ଲେଖାଖାତା
ଗୋଲ ବ୍ରହ୍ମା ବସ୍ତୁ ଦୁଧଖଡ଼ି ଧରି ଘୋଷାଉ ଥିଲେ ସେ ବେବରତା
ଖରାବେଳ ହେଲେ ଉପରକୁ ଚାହିଁ ବେଳ ହେଲା କହି କରି ଛୁଟି
ବେତଖଣ୍ଡ ଧରି ଘରକୁ ବାହୁଡ଼ି ପଶୁଥିଲେ ପାଦ ଚିପି ଚିପି
ଅଧଘାଏ ଡେଲେ ଜୁଡ଼ୁବୁଡ଼ୁ ହୋଇ ଗାଆଁ ପୋଖରୀରେ ସ୍ନାନ ସାରି
ଯେଉଁ ଗୃହଘରେ ସେଇଦିନ ପାଳି ଉଭା ତା ଦୁଆରେ ବାର୍ ପରି
ଦିନକୁ ବଳକେ ଆହାର ତାଙ୍କର କଟକା ତଉଲେ ଗୁଡ଼ଳରେ
ଶାଗ ତରକାରି ନଥିଲେ ଚଳଇ ଶୁଖୁଆ ପୋଡ଼ାରୁ ଖଣ୍ଡେ ଥିଲେ
ସିଏ ଚଳିଯାନ୍ତି ଆମ ପାଳିଘରେ ତାଙ୍କ ଘର ଚଳେ ଦେଉଳରୁ
ଦୁଇକାମ କରି ସଂସାର ନ ଚଳେ ଦୁ ରୂହ ହୁଅଇ ବେଳୁ ବେଳୁ
ଶ୍ରୀପଞ୍ଚମୀ ଆଉ ଗଣେଶ ପୂଜାରେ 'ଶ୍ରୀଫଳ' ଥାଳିଆ ହାତେ ଧରି
ଗାଆଁ ବୁଲି ଆମେ ଚୂଡ଼ାଭିକ୍ଷା କରୁ 'ବଦେଇ ହରି'କୁ ବୋଲି ବୋଲି
ସେଇଥିରେ ଯାହା ମିଳଇ ପଇସା ଅବଧାନଙ୍କର ଲୁଗାପଟା
ବରଷକ ପାଇଁ ଖରିଦ ହୁଅଇ ଶେଷ ହୁଏ ତାଙ୍କ ଲୁଗାଚିନ୍ତା
ସ୍ୱାୟତ୍ତ ଶାସନ ଆସି ଏହି ଦେଶେ ଜିଲ୍ଲାବୋର୍ଡ଼ ଯେବେ ଗଲା ଖୋଲି
ଗାଆଁରେ ଗଣ୍ଡାରେ ଇସ୍କୁଲ ପାଇଁକି ଲୋକମାନେ ସବୁ କଲେ ଅଳି
ସେହି ଦିନଠାରୁ ଉଠିଲା ଗୁହାଳ ଅବଧାନେ ଆମ ସାଥେ ଗଲେ
ମାସେ ଚୁରିଟଙ୍କା ବେତନ ପାଇଲେ ରହି ହେଡ଼ ପଣ୍ଡିତଙ୍କ ତଳେ

ସକାଳୁ ଦଉଡ଼ି ବେତ କେଞ୍ଚାପାଇଁ ଆମେ ତ ନଦେଲୁ ତରତର
ଅବଧାନେ ଆମ ଦ୍ୱାରେ ଦ୍ୱାରେ ବୁଲି ଆମ୍ଭକୁ ଡାକିବା ହେଲ ସ୍ଥିର
ଚାକର ମୋହରେ ହାକିମ କଥାରେ ବଦଳିଗଲା ତ ଭାବଭଙ୍ଗୀ
ଆମ ସଙ୍ଗେ ତାଙ୍କୁ ଚଳିବାକୁ ହେଲା ଯେପରିକି ଆମେ ତାଙ୍କ ସଙ୍ଗୀ
ଇସ୍କୁଲ ବେଳାରେ ଆମରି ଦୁଆରେ ବାବୁ ବାବୁ ବୋଲି ଡାକି ଡାକି
ସଙ୍ଗେ ନେଉ ନେଉ ଚାରିଆଡ଼େ ଚାହିଁ ମନେ ମନେ ଯାଉଥିଲେ ରାଗି
ମନେଅଛି ଦିନେ କଚ୍ଛୁବାଠ ନେଇ 'ବଉଳ' ମୂଳରେ ରହିଯାଇ
ଗଳାକୁ ଖିଙ୍କାରି କହିଲେ ସେ ମୋତେ କେଉଡ଼େ ବାବୁ ଭୁଲି ଗଲୁ ହୋଇ
କହି 'ବୁଢ଼ାମୁଣ୍ଡା ନଜର୍ ସକାଳୁ' ଚାପୁଡ଼େ ଦେଲେ ସେ ନାକପରେ
ହାତ ଦେଲେ ସିନା ଅକ୍କା ହୋଇଗଲେ ନାକରୁ ଦେଖି ସେ
ରକ୍ତଧାରେ
ନାକ ପୋଛିଦେଇ କାଖେଇ ପକାଇ ଆମ ଘରକୁ ସେ ଗଲେ ନେଇ
ଅନାଇ ରହିଲେ ଅତି କାତରରେ ବାପାଙ୍କ ପାଖରେ ଦୋଷ ପାଇଁ
ବାପା ବୋଧଦେଇ କହିଲେ ତାହାଙ୍କୁ ସନ୍ଧିରୁ ବୁହଇ ସେ ରକତ
ଦୋଷ ନାହିଁ ତୁମ ଏଇଥି ପାଇଁକି ହୁଅ ତୁମେ ବୃଥା ଧାନ୍ଦସନ୍ତ ?
ଅବଧାନେ ନିଜେ ନିଜ କାନ ମୋଡ଼ି ନିଜ ଗାଲେ ଦେଇ ଦି ଚାପୁଡ଼ା
କହିଲେ ଶିଖିଲି ଅତି ବଡ଼ କଥା ହୁଏ ପଛେ ମୁହିଁ ନିଜେ ବୁଢ଼ା
ମାରପିଟି କରି ମଣିଷ କରିବା ଶିଖିଥିଲି ମୁହିଁ ପିଲାଙ୍କୁ
ଏବେ ତ ଶିଖିଲି କ୍ଷମା ଓ ଆଦର ଗଢ଼ଇ ମଣିଷ ମାଆ କୋଳୁ ।



# ଲଇଖଣ ଯୋଗୀ

ଲଖଣିଆ ନାଥ କେନ୍ଦରା ବଜାଏ ଗାଆଁ ଗାଆଁ ବୁଲି ବୁଲି
ଗାଆଁ ବାଡ଼ପଟେ କେନ୍ଦରା ମୂର୍ଚ୍ଛନା ପବନରେ ଯାଏ ଖେଳି
ଶାଶୂ ଶୁଣେ ଗୀତ ଧରଇ ବରଦ 'ସୀତା' ଦୁଃଖ ଶୁଣିବାକୁ
ଝିଅ କହେ ବୋଲ ଜେମାଦେଈଙ୍କ କଥା ବଇଲା ଯେ 'ସାଧବକୁ'
ଛୋଟପିଲା ଆସି ବେଢ଼ିଯାନ୍ତି ପାଶେ କହନ୍ତି ତୁ ଗପ କହ
ନୂଆବୋହୂ ଉଣ୍ଡେ କବାଟ ଫାଙ୍କରେ ବସନେ ପୋଛୁ ତା ଲୁହ
ଲଇଖଣ ନଷ୍ଟେ ପାଇଥିବ ତାର ବାପଘର ଆଡ଼େ ଏବେ
ମାଆ ଦେଇଥିବ ଖବର ତା ହାତେ ହେଲା ନ କରିଣ କେବେ
ଏବେ ବୋହୂ ହୋଇ ଶାଶୂଘରେ ବନ୍ଦୀ ସହେ ନଣନ୍ଦ ଗଂଜଣା
ବସିବା ଖାଇବା ସବୁଥିରେ ଦୋଷ ମହାଦୋଷୀରେ ସେ ଗଣା
ଚାଉଳ ପୁଂଜକ ଅଂଜୁଳାରେ ଧରି ଲଇଖଣେ ଥାଏ ଚାହିଁ
ବାଗ ଦେଖି ଧୀରେ ଲଇଖଣ ଆସେ ଚାଉଳ ପାଇବା ପାଇଁ
ସଭିଏ ମାତିଲେ ଗପରେ ତାଙ୍କର ଲଇଖଣ ଧୀରେ ଧୀରେ
ଅଣ୍ଟାରୁ କାଢ଼ିଣ ଚଟାଉ ଖଣ୍ଡିକ ଗୁଂଜିଦିଏ ହାତେ ତାରେ
ବୋଉ ଲେଖିଥିବ ବାପାବା ଆସିବେ ତାହାକୁ ନେବାକୁ ପରା
ଚିଠି ଲୁଚାଇ ପଢ଼ିବା ପାଇଁକ ଚାଲିଯାଏ ସିଏ ଭିତର
ବେଳେବେଳେ ପୁଣି ନଣନ୍ଦର ଆଖି ପଡ଼ିଗଲେ ଚିଠିପରେ
ଛଡ଼ାଇ ନେଇ ସେ ବଡ଼ପାଟି କରି ସବୁରି ଆଗରେ ପଢ଼େ
କେତେ କେତେ ଝିଅ ବାହାଘରେ ଚିଠିରୁ ନାନା କଥା ଉଠେ ଆସି
ବାପ ମାଆଙ୍କର ଖରାପ କଡ଼ାଣ ସବୁପାଇଁ ବୋହୂ ଦୋଷୀ
ଗାଳିଖାଏ ବୁଢ଼ା ଲଇଖଣ ଯୋଗୀ କି ଗଂଜଣା ସହେ ବୋହୂ
ତଥାପି ସେ ଯୋଗୀ ନଛାଡ଼େ ଅଭ୍ୟାସ ସିଏ ଯାହା ତାକୁ କହୁ
ଦୁଃଖୀଜନ ସାଥି ଲଇଖଣ ବୁଢ଼ା ବୁଝେ ଦୁଃଖୀ ମନ କଥା
ମାଆ ସନ୍ଦକରେ ଲାଘବ କରଇ ଟିକି ବୋହୂ ମନ ବ୍ୟଥା
ଆଇନ ହୋଇଛି ସତ୍ୱବନ ବୋହୂ ଶାଶୂ ନଣନ୍ଦଙ୍କ ଦାଉ
ଲଇଖଣ ବୁଢ଼ା ଯାଇଛି ସରଗେ କେନ୍ଦରା ନବାଜେ ଆଉ ।



# ଗଦା ବାଇଆ

‘ସମାଜ’ କାଖରେ ସବୁଶ ଦୁଆରେ
ସକାଳୁ ଦୁଇଟା ଯାଏ
ଗଦା ବୁଲି ବୁଲି କାଗଜ ଯୋଗାଏ
ତାକୁ ନ ଚିହ୍ନଇ କିଏ
ସମସ୍ତେ କହନ୍ତି ତାର ରୂପ ଦେଖି
ଗଦା କୃପଣଙ୍କ ମଣି
ପେଟ ମାରିମାରି ଭେଖାଜ ବେଶରେ
ରଖିଛି ପଇସା ଖଣି
ବଇଦ କହିଲେ କ୍ଷୀର ଖାଇବାକୁ
କ୍ଷୀର କଣି ଅଧମାଏ
ଦୁଇଦିନ ଖାଇ ‘ମସଲ’ ଦେଖାଇ
ଓଜନ ବଢ଼ିଲା କହେ
ବନ୍ଧୁ ମନସ୍ତାପେ ଗଦା ବାହା ହେଲା
କନିଆ କଉଡ଼ି ଦେଇ
ଶ୍ୱଶୁର କହିଲା ଚମ୍ପାକଢ଼ି ଝିଅ
ଅଗ୍ରବରୁ ଦେଲି ମୁହିଁ
ବଷାଘର ପରେ ଶୁଭିଲା ସେ ଘରେ
ଶୁଙ୍ଁ ଶୁଙ୍ଁ କେତେ କାନ୍ଦ
ଖାଇଗଲା ସବୁ ସରିଗଲା ସବୁ
ଗଦା ଲଗାଇଲା ହିନ୍ଦ
ଧୀରେ ଧୀରେ ପାଖ ପଡ଼ୋଶୀ ଭିତରୁ
କେହି ତାହା ଘରେ ଆସି
ଫୁସ୍‌ଫାସ୍ କରି ସାନ୍ତ୍ୱନା ଦେବାରୁ
ଗଦା ମନ ଗଲା ଲସି

ସନ୍ଦେହ ମନରେ ଗ୍ରାଡ଼ ନା ବେଉସା
ଜଗି ରହିଲା ସେ ଘରେ
ଦିନେ ସେ ଘରଣୀ ଗ୍ରୁଡ଼ ପଳାଇଲା
ପେଟ ପୋଷିବାକୁ ଦୂରେ
ସେଇଦିନୁ ଗଦା ବସି ତା ଦୁଆରେ
ଗାଳିଗୁଲା ଦିଏ ସେତୁ
କହେ ଖାଇଗଲା ସବୁ ନେଇଗଲା
ଶିଖାଇ ନେଲା ମୋ ‘ବୋହୂ’
ବରଷ ବରଷ କଟିଲା ଏପରି
ବାଇଆ ଗଦାର ଘାଟି
ଶୁଣି ଶୁଣି କାନ ତାବଦା ହୋଇଲା
ଡରମାଡ଼େ ଆଖି ଦେଖି
କାହିଁଗଲା ସିଏ କେଉଁଆଡ଼େ ନେଲା
ବେଳେ ବେଳେ ପାଟି କରି
ସ୍ତ୍ରୀଲୋକ ଦେଖିଲେ ଚିହ୍ନିଠ ପାଇଁକି
ଦାଣ୍ଡକୁ ଆସଇ ଭିଡ଼
ଦିନେ ସେ ଦେଖିଲା ମାଇପି ଗୋଟିଏ
ଏକାକୀ ରିକ୍‌ସାରେ ବସି
ତାକୁ ଗୃହିଁ ଗୃହିଁ ଆସୁଛି ଦାଣ୍ଡରେ
ମୁଣ୍ଡରେ ଓଢ଼ଣା ଖୋସି
ଗଦା ଧାଇଁ ଯାଇଁ ରିକ୍‌ସାରେ ବସିଲା
ରିକ୍‌ସା ହୋଇଗଲା ଦୂର
ସେ ଗଦା ବାଇଆ କେଉଁଆଡ଼େ ଗଲା
ରଖିନି କେହି ଖବର ।

# କାଳେଶୀ ବୁଢ଼ା

ଏତେ ବଡ଼ ଡେଙ୍ଗା ଅର୍ଜୁନ ଗଛ
ଆଖେ ପାଖେ ନାହିଁ ତାହାର ବଂଶ
ତାହାର ଅଗରେ ବସିଣ ଲୋକେ
ପୁରୀ ରଥଯାତ୍ରା ଦେଖନ୍ତି ଥୋକେ
ଚଉଦ ମାଇଲ ପୁରୀ ସହର
ତଥାପି ତ ଦିଶେ 'ରଥ'ର ଖେଳ
ସେହି ଗଛ ମୂଳେ ମାଟିର ଦିଅଁ
ଘୋଡ଼ାମାଟି ଘୋଡ଼ା ସିନ୍ଦୂର ମୁହଁ
ନସନ୍ଧଠାରେ ଲାଗେ ଏତେ ଗହଳ
ମାଡ଼ ଆସୁଥାନ୍ତି ଭକତ ଦଳ
ଦିଖାଖିଆ ବୁଢ଼ା କାଳେଶୀ ହୋଇ
ବେତ ଧରି ହାତେ ନାଚଇ ତହିଁ
ପିଲା ଆମେ ସବୁ ଇସ୍କୁଲୁ ଫେରି
ହାତେ ଖଡ଼ି ଆଉ ସିଲଟ ଧରି
ଅଟକି ସେଠାରେ ରହିଲୁ ଚାହିଁ
ଜାଅନ୍ତା ଦିଅଁଙ୍କୁ ଦେଖିବା ପାଇଁ
କାଳେଶୀ କହଇ ଦିଅଁଙ୍କ କଥା
ଘୁଂଚୁଇବା ପାଇଁ ଭକତ ବ୍ୟଥା
ତାହା କଥା ଏବେ ବେଦର ଗାର
ଶିରୋଧାର୍ଯ୍ୟ ଅଟେ କଥା ତାହାର
ଆରଦିନ ଆମେ ଫେରିଲୁ ବେଳେ
ଦେଖିଲୁ ସେ ବୁଢ଼ା ବକଳେ ଗଡ଼େ
ଶୋକରେ ଶୁଖିଛି ତାହାର ମୁହଁ
ଗୁଡ଼ିଚ କାଳେଶୀ ନୁହେଁ ସେ ଦିଅଁ
ବୟସ ତାହାର ଅଶୀରୁ ବେଶି
ହାଡ଼ ଦେହେ ଖାଲି ଚମ ଲାଗିଛି
ନାହିଁ ବଳ ଆଉ ନ କରେ କାମ
ଖାଦ୍ୟ ଯୋଗାଡ଼ିବା ବଡ଼ ବିଷମ
ଧରିପାରେ ନାହିଁ ବନଶି ମାଛ
ଯୋଗାଡ଼ କରଇ ଗେଣ୍ଡା କଇଁଚ
କଇଁଚର ଡିମ୍ବ ପୋଖରୀ କୂଳେ
ପାଇବା ଆଶାରେ ମାଟି ସେ ଖୋଳେ
ପୋଖରୀ ହୁଡ଼ାରେ ଗାଆଁ ମଶାଣି
କଅଁଳା ପିଲା କେ ପୋତିଛି ଆଣି
ଫସ ଫସ ମାଟି ବୁଢ଼ା ଦେଖିଲା
ଡିମ୍ବ ପାଇବାକୁ ଆଡ଼େଇ ଦେଲା
ଛୁଇଁଦେଲା ହାତେ ପିଲା-ମୁର୍ଦ୍ଦାର
'କି ପାପ କଲି ମୁଁ' କଲା ଚିତ୍କାର
ପ୍ରାୟଶ୍ଚିତ ପାଇଁ ପଇସା ଲୋଡ଼ା
କାହିଁ ସେ ପଇସା ବିକଳ ବୁଢ଼ା
ପାପଭାର ନେଇ ଗାଆଁକୁ ଫେରି
କାଲି ଦିଅଁ ଆଜ ଯାଉଛି ଗଡ଼ି ।



# ପାଗା ମିସ୍ତ୍ରୀ

ପାଣି ଓ ଆଇନ ଚଳପ୍ରଚଳନ ଆଚରଣ ଅନ୍ଧ ପରି
ବାଇଦା ଦିନରେ ହାଜର ନହେବା ଅଟେ ଅତି କ୍ଷତିକାରୀ
କୋମ୍ପାନି ଅମଳେ ତାରିଖ ଦିନରେ ଯାଇକରି କଲିକତା
ଖଂଜଣା ନଦେଇ ଜମି ଚାଲିଯିବା ଏ ହେଲା ଆଇନ କଥା
ସେହି ସନସେଟ୍ ସନ୍ଧ୍ୟା ଆଇନରେ ରେଳ ବି ନଥିଲା ବେଳେ
ଓଡ଼ିଶାର ଜମି ନିଲାମରେ ଯାଇ ବଂଗାଳି ମାଲିକ ହେଲେ
ଏବେ ପାଗା ମିସ୍ତ୍ରୀ କଲା ମୋକଦ୍ଦମା ସରକାରୀ ଟଂକା ପାଇଁ
ଓକିଲ ବିଚରା ବାଇଦା ନେଇଛି ମହକିଲେ ଚାହିଁ ଚାହିଁ
ପାଗା ଆସି ଶେଷେ କହେ ନିର୍ବିକାରେ ପଡ଼ିଗଲା ଅସୁବିଧା
ଏବେ ସବୁ ସାରି ଆସିଲି ଏଠାକୁ କରିବା ହେଉ ସୁବିଧା
ପନ୍ଦର ବରଷ ବଡ଼ପୁଅ ମୋର ଏକାଥରେ ହେଲା ଧାଫା
ମିଛେ ହନ୍ତସନ୍ତ କରିଲା ଆମକୁ ଗଛୁପଡ଼ି ଦଫାରଫା
କୋଳିଗଛେ ଥିଲା ବୁଢ଼ୀ ପିତାଶୁଣି ପୁଅ ଚଢ଼ିଲା ଗଛରେ
ଡାଳ ଭାଙ୍ଗି ତାକୁ କଚୁଡ଼ିଲା ତଳେ ନାକବାଟୁ ରକ୍ତ ଝରେ
ଦିନ ଦିପହରେ ଶୋଷିଲା ଡାହାଣୀ ଆଖିବାଟେ ପ୍ରାଣ ଗଲା
ଡାକ୍ତରଖାନାକୁ ବୃଥାରେ ନେଇ ମୁଁ କିଛି ଖର୍ଚ୍ଚବାର୍ଚ୍ଚ ହେଲା
ଯେତେଦିନ ପାଇଁ ଯେ ଆୟୁଷ ଦେଇ ଆସିଥାଏ ମର୍ତ୍ତ୍ୟପୁରେ
କାଳ ପୂରିଗଲେ ଯେଉଁବାଟେ ଲେଖା ସେଇ ବାଟେ ବାଟେ ଫେରେ
ପ୍ରଥା ଅନୁସାରେ ସେଇ ଶୁଦ୍ଧଶ୍ରାଦ୍ଧ ମୁହିଁ କରି ଏବେ ଶେଷ
ଆସୁଛି ଏଠାକୁ କହିବେ ହାକିମେ ନ ଧରିବେ ମୋର ଦୋଷ
ପୁରୀ ସହରରେ ଜନମିଛି ପାଗା ବେପରୁଆ ଭାବ ତାର
ଅଦ୍ଭୁତ ଭାବନା ନିର୍ଲିପ୍ତ ପୁରୁଷ ଏପରି ଚାଲେ ସଂସାର
ଦୁଃଖରେ ସୁଖରେ ନୁହଁଇ ବିବ୍ରତ ଭୋଗ, ରୋଗ ଏକାପରି
ଜଡ଼ବାଦ ଯୁଗେ ଏପରି ମଣିଷ ଆସିଲା କାହୁଁ କିପରି ?



# ହିସାବ ନିକାଶ

ସକାଳରୁ ଆଜ କେତେ ଗହଳ    ମାଡ଼ ଆସୁଛନ୍ତି ପିଲଙ୍କ ଦଳ
ରିକ୍‌ସା ଆସିଛି ବାବୁ ଘରକୁ    ସହରଠୁଁ ଦୂର ଆମ ଗାଆଁକୁ
ନାହିଁ ପିଚୁ ରାସ୍ତା ଅଣ୍ଟୁଏ ବାଲି    ହାତଟଣା ରିକ୍‌ସା ଆସିଲା ଚାଲି
ରିକ୍‌ସାବାଲା ଆଉ ରିକ୍‌ସାଚଢ଼ାଳି    ଦୁହେଁ ହେଉଥିଲେ ନିଶାରେ ଘାରି
ଦୁହିଙ୍କ ଭିତରେ ଚାଲେ ହିସାବ    ଫଇସଲା ହେଲେ ଚାଲକ ଯିବ
କହେ ରିକ୍‌ସାବାଲା ଶୁଣହେ ବାବୁ    ଏ ଅସାଧ ବାଟ ଜାଣିଛ ସବୁ
ଏହି କାଳ ବାବୁ ବଡ଼ ମହର୍ଗ    ପଂଦର ମାଇଲ ଟଙ୍କାଏ ଦେବ
ଚଢ଼ାଳି କହଇ ଅରେ ମୂରୁଖ    ଏଥିପାଇଁ ତୁମେ ପାଉଚ ଦୁଃଖ
ଘଂଟାଏ କାମକୁ ଟଙ୍କା ପଚରି    ଆମେରିକା କୁଲି ନିତ ଅର୍ଜୁଚି
ଝାଳନାଳ ହୋଇ ଛ'ଘଣ୍ଟା ଲାଗି    ଟାଣିଚୁ ଏ ରିକ୍‌ସା ମୋହରି ଲାଗି
ଟଙ୍କାଟିଏ ମୋତେ ମଜୁରି ଦେଲେ    ପୋଟେ କି ଦଇବ ସାହିବ ହେଲେ
ଦେଢ଼ଟଙ୍କା ତୋ,ତେ ଯାଚ ମୁଁ ଦେବି    ହିସାବ ଏଥର କରଭୁ ଭାବି
ଏତେ ଦୟାବନ୍ତ ବାବୁ ହେ ତୁମେ    କି ବୁଝିବୁ ତ.ହା ମୂରୁଖ ଆମେ ?
ଚଢ଼ାଳି କହଇ ଶୁଣ ହିସାବ    କାହାର କେତେକ ପଇସା ହେବ
ପୁରର ବାହାରେ ଅଠର ନଳା    ସେଠି ଯେ ରଲମ ଆଗ ଚାଲିଲ୍
ତା ସାଙ୍ଗ ଚଟକ ଚାରିଟି ଅଣା    ଦୁଇଅଣା ତୋର ହୋଇଲା ଗଣା
ଚନ୍ଦନପୁରରେ ଆଉରି ଛୁଟା    ସତ୍ୟବାଦୀ କଥା ମନେ ରଖିଥା
ଏପରି ଖରଚ ଗୋଟିଏ ଟଙ୍କା    ତୋ ଭାଗ ଆଠଣା ନକର ଶଙ୍କା
ଏତେ ଦିନେ ମୁହିଁ ଗାଆଁକୁ ଆସି    ବୋଉ ମୋର ଯେଉଁ ଭୋଜି କରିଛି
ଖେଚୁଡ଼ି ମହୁର ବେସର ଭଜା    ଖାଇବାକୁ କେତେ ଲାଗିଲା ମଜା
ଏପରି ମିଲ୍ କି ହୋଟେଲେ ମିଳେ    ମିଳିଲେ ନୋହିବ ଦି'ଟଙ୍କା ତଳେ
ତୋପାଇଁ ଅଧା ମୁଁ ଦଉଚି ଛାଡ଼ି    ଗୋଟିଏ ଟଙ୍କା ତୁ ଦିଅରେ କାଢ଼ି

ଏପରି ଦେଡ଼୍‌କୁ ଦେଡ଼ ତ ଗଲା  ସକାଳର ଗୁହା ବାକି ରହିଲା
ସେଥିପାଇଁ ଯାହା ଦବୁ ତ ଦିଅ  ଗଡ଼ାଇ ଟିଏ ରିକ୍‌ସା ପୁଣ ତୁ ନିଅ
କେଉଁଠୁ ଦେବି ମୁଁ ଗୁହା ପଇସା  ଗରିବଟି ମୁହିଁ ରିକ୍‌ସା ବେଉସା
କହିଲା ଚଡ଼ାଳ ମୁରୁକି ହସି  ବୋକା ଦୋସ୍ତ ମୋର କି ଘବୁ ବସି
କିଛି ଭୟ ନାହିଁ କିଏ ମାଗୁଛି  ଶୁଣ ଦୋସ୍ତ ମୁହିଁ ଯାହା କହୁଚି
ଖାଲି ରିକ୍‌ସାଟାଏ କାହିଁକି ନେବୁ  ଗୁହା ପଇସା ବା କିଂପାଇ ଦେବୁ
ଆମେ ତୋ ରିକ୍‌ସାରେ ବସି ପଡ଼ିବା  ଗୁଲି ସାଙ୍ଗ ହୋଇ ପୁଉଣି ଯିବା
ପୁଉଣି ବାଟରେ ହୋଇବ ମଜା  ଟାଣିବା ଚିଲମ ଖାଇବା ଖଜା
ଧନ୍ୟ ଧନ୍ୟ ବାବୁ ତୁମ କରୁଣା  ହିଁ ନାଥ ଗୋସାଇଁ ନକରୁ ଉଣା
ହଉ ହଉ ତୁମ ଧରମ ହେଉ  ପୁଣି ମଉଜରେ ସମସ୍ତ ଯାଉ
ଚଡ଼ାଳ ହୋଇଲା ଟଣାଳ ସାଥି  ହିସାବ ହୋଇଲା ନିକାଶ ଏଥି
ଫେରିଲା ରିକ୍‌ସା ବାଲା ଆଡେଇଁ  ପିଲେ ଡେଉଁଥିଲେ ଧୂଳି ଉଡ଼େଇ ।



# ଗାନ୍ଧି

ଭରିଲା ସରଣୀ କଂପିଲା ଅବନୀ କଂପୁଥିଲା ହିମାଚଳ
ତିରିଶ ମସିହା ଭାରତ ବୁକୁରେ ପକାଇ ଦେଲା ଚହଳ
ଅସହଯୋଗର କୁହୁକ ମଂତରେ ଯୁବପ୍ରାଣ ଉଠେ ନାଚି
ସମୁଦ୍ର କିନାରେ ଲୁଣ ମାରୁଥାନ୍ତି ବୋହୂ ଭୁଆସୁଣୀ ଆସି
ଗାଆଁ ହୁଏ ଶୂନ୍ୟ ଜେଲଖାନା ପୂର୍ଣ୍ଣ ବାଛ ବିଚାରତ ନାହିଁ
ଦେଶ ମୁକ୍ତି ପାଇଁ ସବୁ ଜାତି ଭାଇ କଏଦ ହୋଇଲେ ଯାଇ
ଗାଆଁରେ ରହିଲେ ଅକର୍ମା ନନ୍ଦୁଙ୍କ ଗୋଷ୍ଠୀ ଗୋଦରା ଗୋଦରୀ
ବୋକଡ଼ା, ବାଇଆ, ମୂର୍ଖ କେତେଟା ଜେଝାର ଭାଗ୍ୟ ଆଦରି
ଏପରି ସମୟେ ଝାଝାରୁ ଫେରିଲେ ଗଂଗାରାମ ଯୁଦ୍ଧେ ଡରି
ଜଗତ ଯାକରେ ଝପକ ନିବସ ନାହିଁ କେହି ତାଙ୍କ ପରି
ବକ୍ତୃତା କରିବା ବିଳାସ ତାଙ୍କର କଥା ବିକିବା ବେଉସା
କାର୍ଯ୍ୟତ ତାଙ୍କର କଥାରୁ ବାହାର ସବୁବେଳେ ଘାରେ ନିଶା
ନିଶାର ସେବାରେ ଚାଲିଯାଏ କେବେ ଗୁପତେ ଘରଣୀ ହାର
କିଛି ନ ମିଳିଲେ ଶୁଖିଲା କାଠରୁ ଚପୁଡ଼ି ଆଣିବେ ମାର
ସହରକୁ ଯିବ 'ରମାନା' ନହେବ କାହୁଁ ବା ମିଳିବ ନିଶା
ଯାଇଛି ଚୁକଶି କଏବା ଗାଆଁରେ ଦେବ ତାହାଙ୍କୁ ପଇସା
ଦେଖିଲେ ଗାଆଁରେ ସବୁ ସୁସ୍ଥ ଲୋକ ଆଂଦୋଳନେ ଦେଇ ଯୋଗ
ପନ୍ଦର ମାଇଲ ଦୂର ସହରରେ କରୁଛନ୍ତି ଜେଲ ଭୋଗ
ଗାଆଁ ଧୁଁଗୁ ନଂଦ ଧୁଂଗାଡ଼ିଏ ସିଏ ଗୋଡ ବିସର୍ଚ ଗୋଦର
ବାତଜ୍ୱର ପୁଣି ଅମ୍ଳରେ ତା କଷ୍ଟ କାହୁଁ ପାଏ ଡାକ୍ତର
ଦୋକାନ ବେଉସା କରିଥିଲା ସିଏ ଜମିତଙ୍କ ଢ଼ାର ସଂପି
ଆଠଣାରେ କିଣି ସାବୁନ ଗୋଟାକ ତିନଣାରେ ଦିଏ ବିକି
ହିସାବରେ ଏଡ଼େ ଝାଣ ଅଟେ ସିଏ ଅଣାଏ ଲେଖଇ ଲାଭ

ସେପରି ବେଉସା କରି ଦେଉଳିଆ ନହୋଇ କିଏ ରହିବ ?
ବାଇଆ ଗୋବିଂଦ ଆଉ ବାଇଆ ସେ ଆଣ୍ଠୁଫୁଲ ଗୋଡ଼ ଘେଣ୍ଠା
ବାଡ଼ି ଧରି ବୁଲି ଭାଇଭାତ ଖାଏ କିସ ବୁଝେ ଦେଶ କଥା
ତା'ଦାଣ୍ଡ ଦୁଆର କଂଚନ ଗଛଟି ମୂଳରୁ ହଲାଇ ଦେଲେ
ଦୁଇଦିନ ଯାଏ ପିଲାଙ୍କ ସହିତ ଗାଳିଦେଇ କଳି କରେ
ଗଂଗା ଡାକେ ଧୁଂଗୁ ଶୁଣରେ ଗୋବିନ୍ଦ ଜାଗ ଛାଡ଼ ବୋକା ଭାବ
ଏ ମଉକା ଯଦି ଛାଡ଼ିଦେବ ଏବେ ଭାଗ୍ୟ ନାହିଁ କିସ ଲାଭ
ଚାଲ ପୁଣି ଯାଇ ପିକେଟିଙ୍ଗ କରି ଅଫିମ ଦୋକାନ ଆଗେ
ଜେଲ ଗଲେ ତୁମେ ବଢ଼ିଆ ଖାଇବ ଡାକ୍ତର ରହିବେ ସଂଗେ
ଦେଶ ମୁକ୍ତି ସଂଗେ ରୋଗ ମୁକ୍ତ ହେବ ଶରୀର ହୋଇବ ତାଜା
ଯେ ଭୋଗ କରନ୍ତି ଲୋକେ ଜେଲ ଯାଇ ତାହା ନ ପାଅଇ ରଜା
ସେହି ବାଣୀ ଶୁଣି କି ଭାବି କେଜାଣି ଧୁଂଗୁ ଓ ଗୋବିନ୍ଦ ଦୁଇ
ବାଟ ଖର୍ଚ୍ଚ ଦେଇ ଗଂଗାଙ୍କ ସଙ୍ଗରେ ସହରକୁ ଗଲେ ସେହି
ଅଫିମ ଦୋକାନ ଦେଖାଇ ଚତୁରେ ପଛରୁ ଖସିଲେ ଗଂଗା
ଦୋକାନ ପାଖକୁ ଧୁଷୁରି ଧୁଷୁରି ଚାଲିଲେ ଗୋବିନ୍ଦ ଧୁଂଗା
ପୋଲିସ ବୋଲଇ ଉଠ ଉଠ ତୁମେ ଗହଳ କରୁଛ ଏଠି
ବେଶୀ ଡେରି କଲେ ଆରମ୍ଭ କରିବି ତୁମରି ଉପରେ ଲାଠି
ବେଳରେ ପଡ଼ୁଛୁ କନଅର ହାରି ଖନାଇ କହିଲା ଧୁଂଗୁ
ଆମେ କାହିଁ ପାଇଁ ପଛକୁ ହଟିବୁ ଆମେ ପରା ଜେଲ ଯିବୁ ?
ଜେଲ କିସ ଏତେ ଶସ୍ତା ପଡ଼ିଅଛି ଖୋଲା ଦ୍ୱାର ତୁମ ପାଇଁ
ମଉଛାର ସେଠି ନାହିଁ ତ ବ୍ୟବସ୍ଥା ଉଠ ଏଠୁ ହେ ଗୋସାଇଁ
ନାହିଁ, ଆମେ ନିଶ୍ଚେ ଜେଲ ଯିବୁ ବୋଲି ଦୁହେଁ ତ ଧରିଲେ ଜିଦ୍‌
ହସୁଥିଲେ ଲୋକେ ହସିଲା ପୁଲିସ ମନେ ଏକ ଫାନ୍ଦ ଫାନ୍ଦି
ଦୁଇ ତିନଦିନ ନର୍ଚିଲା ଉପାସେ ଜେଲ ପାଇଁ କରି ଅଳି
ଗୋବିନ୍ଦ ଓ ଧୁଂଗୁ ଦୁହିଁଙ୍କ ଭିତରେ ଲାଗିଗଲା ପୁଣି କଳି

ପୁଲିସ ବାପୁଡ଼ା ଜିସ ପାଂଚ ମନେ ଦୁଇ ସାଇକେଲ ଧରି
ଆସି ଜେଲ ଯିବ କହି ତାଙ୍କୁ ଡାକୁ ଦୁହେଁ ପଡ଼ିଲେ ବାହାରି
ଦୁଇଟା ପ୍ରହରୀ ଦୁହିଁଙ୍କୁ ବୋଝାଇ ସମୁଦ୍ର କିନାରା ବାଟେ
ଅପନ୍ତରା ବାଲି ପଡ଼ିଆରେ ନେଇ ଓହ୍ଲାଇ ଦେଲେ ଉଷଟେ
"ଏହି ତୁମ ଜେଲ ଖଙ୍କି ଯିବ ଗେଲ" ଗୁଳିଗଲେ ସିଏ କହି
ଘୁଂଗୁ ଓ ଗୋବିନ୍ଦ ଡହଳ ବିକଳେ ବୁଲିଲେ ଚହିଁ ଗ୍ଲେଟେଇ
କାହୁଁ ବା ମିଳିବ ଖାଦ୍ୟ ବା ଡାକ୍ତର ନ ଦିଶଇ ଗାଆଁ ଗଣ୍ଡା
ବାଲିବନ୍ତ ଖାଲି ଦିଶେ ଧାଉ ଦାଉ ହନ୍ତସନ୍ତ ହୁଇ ହୁଣ୍ଡା
ବହୁତ କଷ୍ଟରେ ବହୁତ ଦିନରେ କି ଯମ ଯଂତ୍ରଣା ଭୋଗି
ନିଜ ଗାଆଁରେ ତ ଆସି ପହଂଚିଲେ ଗଂଗାଙ୍କ ଉପରେ ରାଗି
ଗଂଗା ଭାଇନା ତ ନମାଡ଼େ ସେ ଗାଁ ସହରେ ବତାଏ ଭାଉ
ଗଙ୍ଗାଙ୍କୁ ରାଗିଲେ ଗାଂଗୀ ହୋଇଯାଏ କାହୁଁ ବା ମିଳିବ ଆଉ ।



# ପଣ୍ଡିତ ପୁଅ

ଗାଆଁରେ ଥିଲେ ଭୂଷ୍ ପଣ୍ଡିତେ ମୁଣ୍ଡେ ଶବଟ ଟୋପା
ଉପଦେଶରେ ବହୁତ ଟାଣ ଲୋକେ କହନ୍ତି ଖେପା
ବଡ଼ ପଣ୍ଡିତେ, ହବନ୍ତି ପିଏ ବଡଣ୍ଡା ଯୁକ୍ତି ଥୋଇ
କଥା କଥାକେ ପକାନ୍ତି ବାଜି ଅକଥା-କଥା ନେଇ
ଅଜଣା ଲୋକ ଆସୁଛି ଦାଣ୍ଡେ ଫୁଲୁକା ଗାଲ ତାର
ସେଇ ପଣ୍ଡିତେ କହିଲେ ଦେଖ କ ଲୋଭମାସୁ ଗାଲ
ଗୁପୁଡ଼ା ଏକ ଦେବ ସେ ଗାଲେ ବାଜି ରହିଲ ଏଠି
କହି ଏକଥା ଦଉଡ଼ି ଯାଇ ଦେଲେ ଗୁପୁଡ଼ା କଷି
ଅଜଣା ଲୋକ ଚମକି ପଡ଼ି ଗୁହିଁଲ ତାଙ୍କୁ ଯେବେ
କୁଣ୍ଢାଇ ଧରି କହିଲେ ତାଙ୍କୁ ରାମ ଅଇଲୁ କେବେ
କହେ ସେ ଲୋକ କଏସେ ରାମ ମୋ ନାମ ଅଟେ ହରି
ଜଭ କାମୁଡ଼ି ପଣ୍ଡିତ କହେ କେଡ଼େ କର୍ମ ମୁଁ କଲି
ଆଜ ତ ଧନେ ଗୁଣ୍ଡା ହର୍ଦ୍ଧାର ଆସୁଛି ନଶ ମୋଡ଼ି
କହେ ପଣ୍ଡିତ ଏହି ଦୁର୍ଦ୍ଧାନ୍ତ ନଶ ମୁଁ ଦେବି ଭାଡ଼ି
ଗୋଟାଇ ଧରି 'କାଠ' ଗୋଟିଏ ଦଉଡ଼ି ଯାଇ ପାଶେ
ତା ନଶ ଭଡ଼ି ଓଟାରି ଦେଇ ଅଳ୍ପ ମୁଡ଼ୁକି ହସେ
ଟିପକୁ ଖୋଲି 'କାଠ' ଦେଖାଇ କହିଲ ଏ ଯେ ଶୀବ
ଅତି ଖ୍ୟତଣ କାମୁଡ଼ି ଦେଲେ ପରାଣ ଗୁଲାଯିବ
ଝଟକି ମୁହିଁ ଫେନ ଆସିଲ ଭୁମ ମୁହିଁରୁ ଖାଇ
ନଶ ଦରଜ ଭୁଲି ସେ ଲୋକ ଗଲ ବଧେଇ ଦେଇ
ପଣ୍ଡିତେ ବଡ଼ ପେଟୁଆ ଲୋକ ମିଠେଇ ହାଣ୍ଡି ଧରି
କବାଟ କଣେ ଲୁଗୁଇ କରି ଦଅନ୍ତି ଶେଷ କରି

‘ବାପ ସେ ବେଣ୍ଟା’ ଯାଦା ତାଙ୍କର ପୁଅ ବୟସ ବାର
ପେଣ୍ଟୁଆପଣ ବାପର ନଦେଖି ମନରେ ସ୍ୱଗ ତାର
ଗାଁ ମୁଣ୍ଡର ଓସ୍ତ ଗଛରେ ବସିଲା ଛପି କରି
ସନ୍ଧ ଘଡ଼ିକେ ବାପ ଆସିଲେ ମିଠେଇ ହାଣ୍ଡି ଧରି
ଓସ୍ତ ମୂଳରେ ହାଣ୍ଡିଟି ଥୋଇ ବାପ ବସିଲେ ଏକ
ଉପରୁ କଳ କଳଆ ଶବ୍ଦ ଶୁଣି ଟେକଲେ ବେକ
ଏତକବେଳେ ଗୋବର ପାଣି ଉପରୁ ଦେଲା ଇଡ଼ି
ଆଖି ମଳଚ ଅନ୍ଧ ଭଳଆ ବାପ ଗୁଡ଼ିଲେ ରଡ଼ି
ପୁଅ ଓହ୍ଲାଇ ମିଠାଇ ଧରି ସେଠୁ ହୋଇଲା ପାର
ଶବଦ ଶୁଣି ଗାଆଁର ଲୋକେ ସେଠାରେ ହେଲେ ଠୁଳ
ଭୂତ ଡରରେ ଡରି ପଣ୍ଡିତେ କଷ୍ଟ ହୋଇଲା ମାର
କେତେ ଲୋକେ ସେ ଡରିଯାଇଥିଲେ ପୁଅ ଯେ ବଳିଗଲା ।



# ଦ୍ୱିତୀୟ ଘର

ସେ କାଳର ଗାଆଁ    ଏ କାଳର ଗାଆଁ
ହେଲାଣି କେତେ ତଫାତ
ଭୂତ ପ୍ରେତ ସବୁ    କାହିଁ ଲୁଚିଲେଣି
ଲୁଚିଛି ପାଠୁଆ ପାଠ
ବ୍ରାହ୍ମଣ ଗାଆଁରେ    ବ୍ରାହ୍ମ ମୁହୂର୍ତ୍ତରୁ
ଉଠୁଥିଲା ବେଦ ଧ୍ୱନି
ଏବେ ନିଦ ଭାଙ୍ଗେ    କୁକ୍କୁଟ ରବରେ
ବିଧବା ପୋଷନ୍ତି ଆଣି
କରଣ ସାହିରେ    ବିବାହ କାଳରେ
ଶୁଭୁଥିଲା 'ଶିଖା' କାନ୍ଦ
ଖାଠୁଆ ସାହିରେ    ଶାଶୁମାନେ ବସି
କରୁଥିଲେ କଳି ଦ୍ୱନ୍ଦ୍ୱ
ଘଣ୍ଟା ଘଣ୍ଟା ଧରି    ଲାଗେ ବାକ୍ୟ ଯୁଦ୍ଧ
ଶୁଣିଲେ କଳରେ ପାଟି
ପଛରୁ ବୋହୂଏ    ତାମ୍ବୁଲ ଯୋଗାନ୍ତି
ପାନଖିଲ ବଟା ରଖି
ବାଉରି ସାହିରେ    ଗେହ୍ଲା ଗାଳିସବୁ
ବୋଲୁଥିଲେ ଗୋଇଆଣି
ତେଲିର ବାପୁଡ଼ାର    ଆଖି ଠୁଡୁଠୁଡୁ
ପିଇ ସେ ଖଜୁରି ପାଣି
ଭକ ତେଲି ଚନ୍ତ    ନରମାସୁ ଲୋକ
ଲଇଁଥାଏ ତାର ମଥା
ତା ନୂଆ ଭାରିଯା    ବଡ଼ ରଣଚଣ୍ଡୀ
ଖଣ୍ଡାଧାର ପରି କଥା
ଦୁଇ ଜଣଙ୍କର    କେତେ ଯେ ଦୁଖଅ
କେତେଥର ଥିଲା ହୋଇ

ଅଧଲଣ୍ଠାକର ଫିକା ସିନ୍ଦୂରରେ
ଦୁଖିଅ ଘର ସରଇ
ବର ପର କହେ ଦଶ ପୁରିଗଲା
ଘଟେ ପଣ ଲଇଁପଡ଼ି
କନିଆ କହଇ କି କଷ୍ଟରେ ଭୁଇ
ଚୌଠାରେ ପୂରିଲା କୋଡ଼
ଦିନେ ସେ ସାହିରୁ ଉଡ଼ାଲା ସ୍ପନ୍ଦନ
'ଭକ ଭୋଇ' ଗୁଞ୍ଜିଗଲେ
ଗୀତ ବୋଲା ପରି ଶୁଭିଲା ବାହୁନା
କାଳି ଅନ୍ଧାର ସକାଳେ
ବାହୁନାରେ ଶୁଭେ ହେ ମୋର 'ଗୁଣର'
ଗଲୁ ଭୁଇ କାହିଁ ଗୁଳି
'କାଉ' ବୋଲି ଆଉ କାହାକୁ ଡାକିବ
ଅଃରେ ମୋ ଦୁଃଖ ସଂଖାଳି
'ବାଡ଼ପଡ଼ା' ବୋଲି ଧାକାରିଲେ କିଏ
ଆସିବ ମୋହର ପାଶେ
ଅଣ୍ଟିଆ କମ୍ପୀର ବୋଲି ଡାକ ଡାକ
ଗୁଞ୍ଜିବ କାହାର ଆଶେ
ଖବର ନେବାକୁ ଉପର ଓଳିକୁ
ଗଲି ମୁଁ ବାଉଶ ସାହି
ନାହିଁ ସେ କନ୍ଦାଳ ଗଲଣି କାଦରେ
ପୁଜଣି ଦୁଖିଅ ହୋଇ
ପୁରୁଣା ଯାଉଛି ନୂଆ ତ ଆସୁଛି
ପୁରୁଣାକୁ ନୂଆ କରି
ଯୁବକ ଯୁବତୀ ଉଆଁନ୍ତି ଉଷତେ
ଛୁଡ଼ପଇ କାଖେ ଭରି ।



# ଶାସନ ଗଦ

ମାଧିଆ ସଅଁର    ରଖିଥିଲା ଗଦ
  ବଟୁଆ ଭିତରେ ବାନ୍ଧି
ସବୁ ରୋଗ ସିଏ    ଭଲ କରୁଥିଲା
  ବୁଲି ବୁଲି ଗଳିକନ୍ଦି
ସେହି ଗଦ ଘୋର ଘାଆମୁହେଁ ଦିଏ
  ବୋଳିଦିଏ ଫୁଲା ପାଇଁ
ପେଟ ଯନ୍ତ୍ରଣାରେ  ଖାଇବାକୁ ଦିଏ
  ସେ ଗଦରୁ ଖଣ୍ଡେ ନେଇ
ସକୃତ ବିକୃତ    ମନର ବାଧିକ
  ପିଲା ଜନ୍ମ ହେବା ଲାଗି
ସେହି ଗଦ ଦେଇ କରେ ସିଏ ଭଲ
  ସମସ୍ତ ଅସାଧ୍ୟ ରୋଗୀ
ଏ ଦେଶ ଶାସନେ  ସେଇପରି ଗଦ
  ବାଛି ଏକ ପରୀକ୍ଷାରୁ
ଆଇ.ଏ.ଏସ୍. ଗ୍ରୁପ ମାରି ତା ଉପରେ
  ସରକାର ହୁଏ ଚଲୁ
ସର୍ବ କାର୍ଯ୍ୟ ଦକ୍ଷ   ସର୍ବ ରୋଗହର
  ସବୁ ବିଭାଗରେ ଲୋଡ଼ା
ସେ ଗଦ ନୋହିଲେ ସରକାରୀ କଳ
  ଅଚଳ ହୋଇବ ପରା

କଳକାରଖାନା   ଯନ୍ତ୍ରସ୍ଥ ମୁଣ୍ଡରେ
  ଲଦା ହୁଏ ସେହି ଗଦ
ବିଶ୍ୱବିଦ୍ୟାଳୟେ, ବିଜ୍ଞାନଶାଳାରେ
  ପାଏ ସେହି ବଡ଼ ପଦ
ସର୍ବଜାଣ ଭାବେ   ଆଦର ତାହାର
  ସବୁଠି ହାକମି ଜାରି
ବଡ଼ ବିଶେଷଜ୍ଞ   ଡରନ୍ତି ତାହାକୁ
  ଗୁଳିକଶି ଚଳିବ ବୋଲି
ବଡ଼ ସାନ ଗଧ   ମନ୍ତ୍ରୀପଦେ ଥାଇ
  ଏହି ଗଦ ସେବା କରି
ଅଟେଡ଼ି ଘନଆ   ଶାସନ ଚଳାଇ
  ଦେଶକୁ ପକାନ୍ତି ଘାରି
ଏବେ ବୁଦ୍ଧିଜୀବୀ   କରନ୍ତି ଗହଳ
  ବୁଝିବେ ନିଜର କଥା
ଏହି 'ଗଦ' ଯୋଗୁ ଦେଶ ପଛଉଛି
  ବଢ଼ୁଚି ଜନତା ବ୍ୟଥା ।



# ହେ ବଦଳି

ହେ, ବଦଳି ! ବହୁରୂପି ! ଯୁଗ ଯୁଗ ଧରି
ଚଳାଉଛୁ ଏ ଦେଶରେ ଶାସନର ତରି
ହେ ଅମୋଘ ଅସ୍ତ୍ର ! ତୋତେ ବ୍ରିଟିଶ ଗୋସାଇଁ
ଉଦ୍‌ଭାବନ କରିଥିଲେ ଶାସନର ପାଇଁ
ରାଜଦ୍ରୋହ-ସଂଗଠନ ସନ୍ଦେହ ଦୃଷ୍ଟିରେ
ସ୍ଥାନଚ୍ୟୁତ କରିବାକୁ ତୋତେ ଖଂଜ ଥିଲେ
ଇଂରେଜ ଫେରିଲେ ସିନା ଛାଡ଼ିଗଲେ ତୋତେ
ଶାସକ ପ୍ରଜନ୍ମ ଆଜ ତୋତେ ନାନାମତେ
କା'ଘରେ ବସେ କଳସୀ ତୋର ନାମ ଧରି
କାହାକୁ ତୁ ଦେଇପାରୁ ଉପାସରେ ମାରି
କେତେବେଳେ ତୋ କରାଳ ଭୀମ ଗରଜନେ
ଥରେ କର୍ମଚ୍ଛାରୀ ଚଉ୍ଦ ଅସ୍ଥିର କଂପନେ
ଶାସକର ମନ, ଅର୍ଥେ ନ ପାରିଲେ ତୋଷି
ବରଷକେ ଦଶଥର ବୃଥାଦୋଷେ ଦୋଷୀ
ଘରଦ୍ୱାର ପିଲାପିଲି ସବୁ ସୁଖ ଛାଡ଼ି
ତୋ ଆଦେଶେ ଦୂର ପ୍ରାନ୍ତେ କଏ ଯାଏ ଚଳି
ତୋ ଚଉ୍ଡକ ପଡ଼ିଗଲେ ଅଗ୍ରଜନକେ ମୁଣ୍ଡେ
ଲାଭଖୋର କର୍ମଚ୍ଛାରୀ, ଅର୍ଥେ, ମଂତ୍ରୀ ବନ୍ଦେ
ସେ ବନ୍ଦନା, ଖୋସାମତେ କେଣି କର୍ମଚ୍ଛାରୀ
ନିଜ ବଦଳି ଆଦେଶ କରାଏ ବାତିଲ
ନିଃସମ୍ବଳ ଅସୁବିଧା ନ ବୁଝେ କେ ଥରେ
ବୃଥା ଦରଖାସ୍ତ ଲେଖି କାନ୍ଦି କାନ୍ଦି ମରେ

କାହାରେ କର କରୁଣା ଲଭ ସ୍ଥାନେ ଆଣି
ଅଳ୍ପ ଦିନେ ବଡାଅ ତୁ ତାହାର କପାଣୀ
କେ ଶାସକ ତୋର ଚଷ ହଲାଇ ହଲଇ
ତୋଳନ୍ତି ଅର୍ଥର ସ୍ତୂପ ଆତ୍ମସୁଖ ପାଇଁ
ପାର୍ଟି ନାମେ ମିଳ ଅର୍ଥ ତୋର ପ୍ରସାଦରେ
'ସ୍ଥାନ'ର ଅର୍ଥ ରହିଛି କର୍ମଗୃଷ ଭୁଲେ
ଶହ ଶହ କର୍ମଗୃଷ ବଦଳି କରଇ
ପ୍ରଭୁତ୍ୱ ଅର୍ଥ ବଢ଼ାଏ ସେ ଶାସନ ପାଇଁ
ଷମତାର ବ୍ୟବହାରେ ବଦଳି ଆଦେଶ
ସରକାରୀ ସ୍ତରେ ସ୍ତରେ ଦୁର୍ନୀତି ପ୍ରବେଶ
ପ୍ରିୟାପ୍ରୀତି ତୋଷଣର ଭୁହ୍ବ ବଡ ବାଟ
ତୋ ହେତୁ ବନ୍ଧୁ ସୁଜନେ ହୋ'ନ୍ତି ଛଟପଟ
ମଂତ୍ରୀ ଖିଆଲରେ ଖର୍ଚ୍ଚ ହଜାର ହଜାର
ବଦଳିରେ ରାଜକୋଷ ହୁଏ ଚୁରଖାର
ତୋହ ଯୋଗୁ ଅସନ୍ତୋଷ ବଢ଼ି ଦିନୁଦିନ
ଶାସକ ଦଳେ କନ୍ଦଳ ପାଇଲଣି ସ୍ଥାନ
ଦୁର୍ନୀତି ଭରା ଏ ଦେଶ ଏକୁ ଆନ ବଳି
ତୋର ଦୋଷ ଗୁଣ ଅବା, କେ ପାରିବ କଳି
ବଦଳି ବନ୍ଦ ଆଦେଶ ଉପରୁ ଆସଇ
ତଥାପି ତୋହର ଗତି ଗୁପତେ ବଢ଼ଇ
ବଦଳି ଆଦେଶ ହୁଏ ପଛ ତାରିଖରେ
ରେ ବଦଳି ତୁ ବଦଳୁ ମଂତ୍ରୀ ତୋଷଣରେ
ହେଉବା ହାକିମ ସିଏ ହେଉବା ଅର୍ଦ୍ଦଳି
ତୋ ଭୟେ କାତର ସର୍ବେ ହେ ଶୂର ବଦଳି ।



## ଓଲଟେ ଶାସନ ରଥ

'ଅଠରଶ' ସାଲେ 'କୋମ୍ପାନୀ' ଅମଳେ
ଏ ଦେଶ ସିପାହୀ, କରିଥିଲେ ଧର୍ମଘଟ
ସେହି ଦିନଠାରୁ ଏବକାଳ ଯାଏ
ସରକାରଙ୍କର, ହୋଇଲେ ଡାହାଣ ହାତ
ପୁଲିସ୍ ବୋଇଲେ ଲୋକେ ବୁଝୁଥିଲେ
ଉଚ୍ଚ ଠେଙ୍ଗାଧାରୀ, ନାଲି ପଗଡ଼ିଆଗଣ
ପୁଲିସ୍ ମାଡ଼ରେ ଟଳି ପଡ଼ିଥିଲେ
ଯୁଗ ଯୁଗ ଧରି, ବହୁ ଦେଶପ୍ରେମୀ ଜନ
ପୁଲିସ୍ ଗୃହକୁ ଇଲସିର ଫନ୍ଦି
କଣ୍ଠାମୟୂ ସିନା, ଉପୁରି ତ ବହୁଗୁଣ
ବନା ମେଘରେ ସେ ସୃଜନ୍ତି କୁଳିଶ
ନାନା ଫାନ୍ଦ ଫାନ୍ଦି, ଲୋକେ କରି ହଇରାଣ
ଆଇନ ରକ୍ଷିବା ଆଦେଶ ପାଳିବା
ଶୃଙ୍ଖଳା ପାଇଁକି, କାର୍ଯ୍ୟରେ ରହି ଅଟଳ
ସଂସ୍ଥ ପରି ସତେ କାମ କରୁଥିଲେ
ପ୍ରାଣ ବିନମୟେ, ଏ ଦେଶ ପୁଲିସ୍ ଦଳ
ହାକିମଙ୍କ ଠାରୁ ପାଇଲେ ଆଦେଶ
ଭୃତ୍ୟବତ ପାଳନେ, ଆଗ ପଛ ନ ବିଚାରି
ଶାନ୍ତିରକ୍ଷା ନାମେ ଗୁଣ୍ଡା, ଦେଶପ୍ରେମୀ
ଭେଦାଭେଦ ଭୁଲି, ଚଳାଉଥିଲେ ସେ ଗୁଳି

ସବୁ ଗଣ୍ଡଗୋଳେ ରାଜମାତା ଚାଲ୍
ତାଙ୍କର ଉପରେଁ, କମିଶନ ବସୁଥିଲ
ଆଦେଶ ଯେ ଦେଲ୍ ମଂତ୍ରୀ ପଦେ ବସି
ବାହୁସ୍ଫୋଟ ମାର, ମୁରୁକାଇ ହସୁଥିଲ
ଗଲେଣି ଇଂରେଜ ଡୁବିଛି କଂଗ୍ରେସ
ସରକାରେ ଏବେ, ବସନ୍ତି ଆଖେଡ଼ା ଦଳ
ସେ ନାଲି ପଗଡ଼ି ଯାଇଛି ଉଭାଇ
ହରରଙ୍ଗୀ ବେଶ, ଯୋଗାଏ ପୁଲିସ୍ କଳ
ବିଶୃଙ୍ଖଳ ହୋଇ ପୁଲିସ୍ କଲେଣି
ତାଙ୍କ ଦାୱା ବାଡ଼ି, ଆନପର ଧର୍ମଘଟ
ତାଙ୍କର ଉପରେ ଚାଲିଲାଣି ଗୁଳି
କି କହିବା କା'ରେ, ଓଲଟେ ଶାସନ ରଥ !



# ଭେଜାଲ ସାହିତ୍ୟ

ପୁରୀ ସହରର ପଣ୍ଡା ଝୋଙ୍କାଝାଏ ଭାଙ୍ଗ ଦି ଗିଲାସ ପିଇକରି
ରାତିପାଙ୍କ ବଡ଼ ବିକଳ ହୋଇଲା ଶୋଇବ କିପରି ଚିନ୍ତାକରି
ଶୋଇପଡ଼ିଁ ଖଟେ ମନେ ପଡ଼ିଗଲା ଗୋଡ଼ ସିଧା’ଛନ୍ତି ଜଗନ୍ନାଥେ
ବୁଲିଗଲା ଗୋଡ଼ ପଶ୍ଚିମ ଦିଗକୁ ବିଜେ ସେ ଦିଗରେ ଲୋକନାଥେ
ଉତ୍ତର ଦିଗକୁ ରଖିଲା ସେ ଗୋଡ଼ ସେପଟରେ ବିଜେ ବିମଳେଇ
ଗୋଡ଼ ଜାକିକି ଦକ୍ଷିଣେ ରଖିଲା ସେଦିଗେ ତ’ଛନ୍ତି ଜାଗୁଳେଇ
ଖଟପରେ ଶୋଇ ଟେକିଲା ଗୋଡ଼କୁ ଅଣ୍ଟାଠାରୁ ସିଧା ଉପରକୁ
ଆକାଶ ଉପରେ ଅଛି ସ୍ୱର୍ଗପୁର କି କରିବ ଯିବ ନରକକୁ ?
ଡେଇଁପଡ଼ି ଖଟୁ ହୋଇଗଲା ଠିଆ ଆଖି ବୁଜି ଭାବେ ଯିବ ଶୋଇ
ମନେ ପଡ଼ିଗଲା ବସୁମାତା କଥା କିପରି ଶୋଇବ ନ ଜାଣଇ
ସେହିପରି ଦିନେ ଓଡ଼ିଆ ସ୍ନାତକ ବିଶ୍ୱବିଦ୍ୟାଳୟ ପିଲା ଜଣେ
ବିରାଟ ସାହିତ୍ୟ ଭବନେ ପଶିଲା ସାହିତ୍ୟ ରଥୀଙ୍କ ଆମନ୍ତ୍ରଣେ
ଜଣେ କାହାପାଇଁ ଚାଲିଛି ବକ୍ତୃତା ସଭାପତିଙ୍କର ଗରଜନ
ଫଟୋ ଉଦ୍‌ଘାଟନ ଉତ୍ସବ ଚାଲିଛି ପଡ଼ି ଉଠି କମ୍ପେ ସେ ଭବନ
ସବୁ ଶୁଣି କିଛି ବୁଝି ନ ପାରିଲା କିଏସେ ? କିପରି ହେଲେ କବି
ଏତେଦିନ କାହିଁ ଲୁଚି ରହିଥିଲେ ସାହିତ୍ୟ ଆକାଶେ ସେହି ରବି
ମଧୁ, ରାଧାନାଥ, ଗୋପ ସ୍ମୃତିସଭା ନହୁଏ କେବେ ସେ ଭବନରେ
ହେଲେବା କିଏସେ ଆସେ ସେହି ସ୍ଥାନେ ଦର୍ଶକ ଗ୍ୟାଲେରୀ ଖାଲି ପଡ଼େ
ଚାରିପଟେ ଚାହିଁ ଜଳଜଳ ଦେଖେ ଫଟୋମାଳ ଦିଶେ ଦାଉ ଦାଉ
କିଏ ବଡ଼ ସାନ ବାରି ନ ହୁଅଇ ସାହିତ୍ୟରେ କା’ର କେତେ ଭାଉ
ସରିଗଲା ସଭା ଫେରିଲେ ସମସ୍ତେ ଗବେଷକ ପ୍ରାଣେ ଆଶା ବାନ୍ଧି
ଭାବି ଭାବି ଖାଲି ବୁଲୁଥିଲା ସିଏ ତେଲେଙ୍ଗା ବଜାର ଗଳିକନ୍ଧି

ଦେଖିଲି ପିଣ୍ଡାରେ ମସିଣା ପକାଇ ବସିଛନ୍ତି 'କବି' ଖାତା ଧରି
ନାକର ତଳକୁ ଚଷମା ଖସାଇ ଲେଖି ଯାଉଛନ୍ତି ପ୍ରାଣ ଭରି
ଦାଣ୍ଡଘରେ ତାଙ୍କ ଗଦା ଗଦା ଲେଖା ମରା ହୋଇଅଛି ଥାକ ଥାକ
ମଝିରେ ମଝିରେ ତାଙ୍କ ହାତଲେଖା ପଢ଼ୁଛନ୍ତି ବସି ପାଖ ଲୋକ
ପଚାରିଲି ସିଏ ପାଖଲୋକେ ଡାକି, ଏ କି ସେହି 'କବି' କହ ମୋତେ
ଏ ଲେଖା ସବୁକି ଏହାଙ୍କ କବିତା, ଏ ମହାପୁରୁଷ କିଏ ସତେ ?
କବି, କି ଲେଖକ, ଭୂତ, ସଦ୍ୟ, ମଂତ୍ରୀ କିବା ଅଟନ୍ତି ଏ କଳାକାର
ସାହିତ୍ୟ ସଦନେ ଝୁଲିଗଲି ଫଟୋ ମନେ ତେଣୁ ବଢ଼େ କୌତୂହଳ
"କହିଲ, କିଏ ସେ ? ଦେଖୁଛ ତ ଲେଖା ଲେଖୁଛନ୍ତି ହୋଇ ଧଇଁସଇଁ
କଳା କାଳି ଫଗେ ସଦା କାରବାର କଳାକାର ରୂପେ ଛନ୍ତି ରହି
ମଫସଲ ଲୋକେ ଦିଅନ୍ତି ମଂତ୍ରଣା ମାଲି ମୋକଦ୍ଦମା କେତେ ଯୋଖି
ଏହାଙ୍କଠୁଁ ମଂତ୍ରୀ କେଉଁ ଗୁଣେ ବଡ଼ କରେଣ୍ଟ ଭିଡ଼ କି ନାହିଁ ଦେଖି
ଭୂତମଂତ୍ରୀ ହେଲେ କବି ସାହିତ୍ୟିକ ଖବର କାଗଜେ ଲେଖିକରି
'ମୋହରର' ବାବୁ ଚଢ଼ନ୍ତେ କି ପଛେ ଲେଖି ଲେଖି ହାତେ ବିନ୍ଧି ପଡ଼ି
ଏହିପରି ଏବେ କେତେ ଯେ ଲେଖକ ସାହିତ୍ୟ ଭୋଜର ଆଶ୍ରା ନେଇ
କର୍ମକର୍ତ୍ତାଙ୍କର ଉଦାର ଗୁଣରେ ଚହ୍ଲାନ୍ତି ନିଜକୁ ଫଟୋ ଦେଇ"
ଓଡ଼ିଆ ସ୍ନାତକ ଗୃହିଁ ବିକ ବିକ ତା ସାହିତ୍ୟ ନିଶା ଗଲା ଛୁଡ଼ି
ଭାବିଲି ସେ କେଡ଼େ ଭୁଲ୍ କରୁଅଛି ବିଶ୍ୱବିଦ୍ୟାଳୟେ ପାଠ ପଢ଼ି
ରେଡ଼ିଓ ଗୀତ ତ ଏ ଦେଶର କାବ୍ୟ ଏ ଦେଶ ଲେଖକ ମୋହରର
ସାହିତ୍ୟ ଶେଷେ କି ଭେଜାଲ୍ ହୋଇଲି ପ୍ରଭୁ ! ଏ ଦେଶକୁ ରକ୍ଷାକର ।



# ଅଛମର ଓଡ଼ିଆ

( ଆନ୍ଧ୍ର ବନ୍ୟାରେ ଓଡିଆ ଶ୍ରମିକ ମରିନଥିବା ରିପୋର୍ଟ ଉପରେ )

ହେ କରାଳ ବାତ୍ୟା ତୁମେ ପଡ଼ୋଶୀ ଆନ୍ଧ୍ରରେ
ଦେଲ ଦେଖା ଅଗ୍ନକେ ଜଘନ୍ୟ ରୂପରେ
ହଜାର ହଜାର ଶବ ପଟପଡ଼ି ଗଲା
ସାରା ଦୁନିଆ, ଦୁଃଖରେ ଉଠିଲା ପଡ଼ିଲା
ପେଟ ପାଇଁ ଆନ୍ଧ୍ର ଦେଶେ ଓଡ଼ିଆ ଶ୍ରମିକ
ବିଚ୍ଛିନ୍ନ ଓ ହଜନ୍ତୁ ପୁଣି କେତେ କେତେ ଲୋକ
ବାତ୍ୟାଂଚଳେ ରହିଥିଲେ ବସବାସ କରି
ବାରହାତ ଉଚେ ଯେବେ ଗଲା ପାଣି ମାଡ଼ି
ଉଡ଼ିଗଲା ଘର ଛୁଟି ଗଲେ ଲୋକେ ଭାସି
ଦୂର ଦୂରାନ୍ତରେ ଗଦା ଶବ ରାଶି ରାଶି
ବତାସ ବୋହିଲା ବେଳେ କଲା କି ବିଚାର ?
କେ ଓଡ଼ିଆ, କେ ତେଲଗୁ କିଏ ସେ ତାମିଲ
ସ୍ୱଳ୍ପ ମଜୁରିରେ ଥିଲେ ଓଡ଼ିଆ ଶ୍ରମିକେ
ନମାରି ବାତ୍ୟା ତାହାଙ୍କୁ ପେଶିଲା କି ଦେଶେ ?
ସବୁତ ମରି ଶୋଇଲେ ଆଖି ପିଛୁଡ଼ାରେ
ଓଡ଼ିଆଏ କେଉଁପରି ଖସି ପଳାଇଲେ
କ୍ଷତି ପୂରଣ ନ ଦେଇ ଠିକାଦାର ଦଳ
ଓଡ଼ିଆ ଶ୍ରମିକ ପାଇଁ ରଚିଲେ କୌଶଳ
ବୁଝିଗଲେ ଅଫିସରେ କେହି ମରିନାହାନ୍ତି
ଫେରିଦେଲେ କାଗଜରେ ଦଅନ୍ତି ସଫେଇ
ସରକାରୀ କୋଷାଗାରୁ ଏତେ ଖର୍ଚ୍ଚ କରି
ହଟଚମଟ କି ସତେ ପାରିଲେନ୍ ଧରି

ବତାସରେ ଓଡ଼ିଆ କି ପଳାଇଲେ ଉଡ଼ି
ଉଠେନି କି ହାହାକାର ତାଙ୍କ ମାଂସ ପଚି
ନ ଚିହ୍ନି ପାରିଲେ ତାଙ୍କୁ ଆମ କର୍ମଗୁଷ
କିପରି ଚିହ୍ନିବେ ଅବା ଓଡ଼ିଆ ବଇଷ
ଧନ୍ୟ ଆମ ଅଫିସର ଧନ୍ୟ ସରକାର
ଲାଲ ଫିତାର ସଫେଇ ଅତି ଚମତ୍କାର
ଓଡ଼ିଆ କି ଅଛିମର ! ଯମ ନ ଛୁଇଁଲା
ତା ମରଣେ କିଏ ହେଲେ ଠୋପେ ନ କାନ୍ଦିଲା
ବତାସରେ ମଲେ ଯିଏ ସେ ଉଭେଇ ଗଲେ
ତାଙ୍କ ପିଲାପିଲି ଯିଏ ଗାଆଁରେ ବା ଥିଲେ
ତାଙ୍କର ବି ସମଦଶା ଖାଦ୍ୟ ଅଭାବରୁ
ଆସିବନି ଶଠେ ଟଙ୍କା ଆନ୍ଧ୍ର ରାଇଜରୁ
ମରି ବି ଓଡ଼ିଆ କୁଳି ମରି ପାରିଲାନି
ଘରଣୀ ମଥା ସିନ୍ଦୂର ଆଜି ଲିଭିବନି
ସେ ଘରଣୀ ଯିବ ଦୂରେ କାହା ଅନ୍ତଃପୁରେ
ବନ୍ଦୀ ହୋଇ କେଉଁ ଗୁପ୍ତ ବଜାର ଭିତରେ
କେଉଁଠି ମରିବେ ଗଡ଼ି ତା ପିଲା କବଲ
ଭିକମଗା ବେଶ ଧରି ସହରରେ ପଷ
ହେ ବେତାଳରୂପୀ ଶବ ଏସବୁ ନିରେଖି
ନରନ୍ତୁ ନୀରବ ତୁମେ ଉଠ ବାରେ ନାଚି
ରଚ ତୁ ତାଣ୍ଡବ ନୃତ୍ୟ ଦେଶର ବୁକୁରେ
ଶିଥିଳ ଓଡ଼ିଆତଂତ୍ରୀ ନାଚିଉଠୁ ଥରେ
ଅମଲାତଂତ୍ରର କଣ୍ଠ ଦୃଢ଼ ପଦେ ଦଳି
ଭାଙ୍ଗ ତୁ ଶାସକ ତନ୍ଦ୍ରା ଛିଣ୍ଡୁ ନାଲି ଡୋରି
ବୋଲଷ୍ଟାଂକ ହାକିମଙ୍କ କଥାରେ ନ ଭୁଲି
ଦେଖନ୍ତୁ ଏ ଦେଶ ନେତା ନିଜ ଆଖି ଖୋଲି

●

## ତାମ୍ର ପତ୍ର

ଥିଲ ଯେ ଆଶ୍ରୟେ ସତ୍ୟାଗ୍ରହ ବେଳେ ବ୍ରିଟିସ ପତାକା ଗୁଇତଳେ
ତାମ୍ର ପତ୍ର ବାଣ୍ଟେ ସତ୍ୟାଗ୍ରହୀରେ ସରକାରଙ୍କର ନିର୍ଦ୍ଦେଶରେ
ଅବା ଜନମିନ ଯିଏ ସତ୍ୟାଗ୍ରହ ବେଳେ ଜେଲରେ କସ ଯେ ବର୍ଦ୍ଧୀଳ
ସ୍ୱାଧୀନ ସୈନିକଙ୍କେ ନେତ୍ରଜେଷର ଟଙ୍କା ବାଣ୍ଟେ ଧରି ତାର ଅର୍ଦ୍ଧକ
ତତ୍‌ଷଣ ବରଷେ ଅବା ଶ୍ରେଷ୍ଠ ଗୃହପ ଉଷାଇ ତ ଗଲେ ସତ୍ୟାଗ୍ରହୀ
ଦେଶବାର ମୁଖା ପିନ୍ଧ ନଚାଇଲେ କେତେ କେତେ ବଗ୍ଧ ଦେଶଦ୍ରୋହୀ
ପୁଲିସ ଆସନ୍ତୁ ଆମେ ସୁପାଟଣ ଅବା ଏମ. ଏଲ. ଏ. କଲମରୁ
ଅର୍ଦ୍ଧଭଗ୍ନ ଘର ଗୁ ପ୍ତ ଟାଉଟର ସବୁ ସେଇଠାରେ ଟୁକ୍ରୁଟୁକ୍ରୁ
ମୁରଲି (୧) ଲଢ଼ିଲା ଷଡ଼ି ସେ ମରିଲା,ମରିଲା ଗୋଲକ (୨) ଜଅଲରେ
ପାଟନା କ୍ୟାମ୍ପରେ ଗୁଳିର ମୁହଁରେ କେତେ ଯେ ଯଉ୍ଵାନ ଲଢ଼ିଗଲେ
ଗାନ୍ଧି ନେତାମଣ୍ଡଧ ସ୍ୱଭାବ ବା ଜେ. ପି. ଲଢ଼ୁତ ନଥିଲେ ଭରି ପାଇଁ
ମାତ୍ର ନେବା ପାଇଁ ଦକ୍ଷିଣା ଗ୍ରହଣ ଏ ଦେଶରେ କାନ ଶୁଣି ନାହିଁ ।
ସତ୍ୟ ଲଢ଼ଯାଏ ସ୍ୱଜନୀତି ବଷେ ମିଥ୍ୟା ତ ଉଠଇ ଉଜ୍ଜ୍ୱଳ
ବାନର ସେନାର ମଶାଣି ଉପରେ ଏହି ଅଟ୍ଟହାସ ସରକାରି
ସରକାରି କଳ ଗୁଲବାଜରେ ଏ ତାମ୍ର ପତ୍ରର ବଣ୍ଟନ
ନିଜ ପାଇଁ ଭଣ୍ଡି ରଚେ ପ୍ରତିନିଧି ଦେଶକୁ କରେ ଯେ ଲୁଣ୍ଠନ
ଉପରେ ଉପରେ ବୁଦ୍‌ବୁଦ୍‌ ଭାସୁଚ ବୁଡ଼ଯାଏ ଦେଶ ନଉକା
ସେଇଥିରୁ ପୁଣି ଲଭ ତ ଉଠାନ୍ତୁ ଏ ଦେଶର ନେତା ଛଉକା
ଅର୍ଥ ଅନଟନ ଖାଦ୍ୟ ଅନଟନ ସତ୍ୟ ଅନଟନ କର୍ମୀରେ
ଜନତା ଶୁଣଇ କୁମ୍ଭୀର କାନ୍ଦଣା ନେତା କ କାନ୍ଦଇ ଅନ୍ତରେ ?



(୧) ପୁରୀର ସ୍ୱାଧୀନତା ସଂଗ୍ରାମୀ ମୁରଲି ତ୍ରିପାଠୀ ।
(୨) ସତ୍ୟବାଦୀର ନେତା ଶ୍ରୀ ଲିଙ୍ଗରାଜ ଦାସଙ୍କ ସାନ ଭାଇ ବାନର ସେନାର 'ଗୋଲକ' ପାଟନା କ୍ୟାମ୍ପ ଜେଲରେ ପ୍ରାଣ ହରାଇ ଥିଲେ ।

# ସୁଷମ ଖାଦ୍ୟ

କଂଟ୍ରୋଲ କାଅର୍ଡ ହାତରେ ଧରି ବନମାଳୀ ଗଲା ସଉଦା କରି
ମାସକୁ ଚାଉଳ ପାଂଚକି କଲେ କଂଟ୍ରୋଲ ବଜାର କି କଲବଲ
ସକାଳୁ ଦାଣ୍ଡିରେ ହୋଇଲା ଠିଆ, ବାରଟା ବେଳକୁ ପାଇଲା ଯାହା
ଆଣି ଥୋଇଦେଲା ଘରଣୀ ପାଶେ, ମୁଣ୍ଡେ ହାତଦେଇ ଘରଣୀ ବସେ
ଗମୁର ଚାଉଳ ଉତ୍କଟ ବାସ ଗୋଡ଼ି ବାଲି ଟମ୍ବୁ ଥାଇ ସରସ
ଆଠ ଗୋଟି ପ୍ରାଣୀ ଖାଇବେ କିସ ତଳ ହନୁ ଟେର 'ନନ୍ତ' ଉପାସ
ବନମାଳୀ ଟେଡେ କିଛି ନ କହି ସ୍ୱାସ୍ଥ୍ୟ ପ୍ରଚାରର 'ସୁଖାଦ୍ୟ' କହି
ଚାଉଳ ଗହମ ସୁଜି ଓ ଚିନି 'ବହୁମୂଲ୍ୟ' କରେ ପାରିଲା ଜାଣି
ବାଦାମ ଶୋରିଷ ଡାଲଡା ଘିଅ ହୃଦ ରୋଗ କରେ ଚାକୁ ନ' ଖାଅ
ଏଣ୍ଡ୍ରିନ୍ ପଡ଼ିଇ ବିଲ ପଦରେ, ପରିବାରେ ବିଷ ମରିବ ହେବେ
ଲୁଣି ମାଛ କରେ ଖାଲି ଆଲର୍ଜି ରହିବ ସୁଖରେ ମାଛକୁ ବର୍ଜି
ଚୁଡ଼ି ଧଡ଼ ଧଡ଼ ଚୁହା ଖାଇଲେ ରକ୍ତ ନଳୀ ରୋଗ କଫି ପିଇଲେ
ଏହା ସବୁ ପଢି ହୋଇଲା ଖୁସି କହିଲା ପିଲାଙ୍କୁ ଅଳପ ହସି
ଖାଇବାନ ପିଲେ ଏ ପବୁ କିଛି ପରକାଶ ଜଳ କନ୍ତୁ ବୋହୁଛି
ଟିଅ କଳପାଣି ଦେଲା ଗିଲାସେ ଦେଖିଲା ତହିଁରେ ଜୀବାଣୁ ଭାସେ
ସୁଷମ ଖାଦ୍ୟର ପ୍ରଚୁର ବାଣ କି ଖାଦ୍ୟ ଖାଇସେ ରଖିବେ ପ୍ରାଣ
ଧନ୍ୟ ସରକାର ଧନ୍ୟ ଏ ଦେଶ, କିପରି ଏ ଜାତି ନୋହିବ ଶେଷ ?



# କଟକେ ମଇଳା ସାକ୍ଷୀ ପ୍ରମାଣ

ଦୋଷି ପାଇଁ ଲୋଡ଼ା ସାକ୍ଷୀ ପ୍ରମାଣ
ଆମ ଆଇନରେ ଅଦ୍ଭୁତ ଟାଣ
ଚୋର କଲାବେଳେ ଚୋରକୁ ଧର
ଯୋଡ଼ା ସାକ୍ଷୀ ଡାକ ପ୍ରମାଣ କର
ଓକିଲ ଦେଇଣ କେସ୍ ଲଢ଼ିବ
ପ୍ରମାଣ ଖିଲାପେ ଚୋର ଖସିବ
ଚୋର ଚୋରିମାଲ ମଜୁତ ଥାଇ
ଆଇନ ଆଖିକୁ ଦିଶଇ ନାହିଁ ।
କଟକ ନଗର ମଇଳା ଗଦା
ଦାଣ୍ଡ, ଘାଟ, ବାଟ, ସଦାସର୍ବଦା
ପାଇଖାନା ରୂପେ କାମ କରଇ
ତଥାପି ଶାସକେ ଦିଶଇ ନାହିଁ
ହଗୁରା ମଣିଷ ପାଗଳା କୁତ
କଟକ ସହର ଖଣ୍ଡ ବଡ଼ାନ୍ତ
ପୁରୁଣା ପୁଲିସ ଗଲେଣି ସରି
କେହି ନ ପାରନ୍ତି ପ୍ରମାଣ କରି
ଅଛନ୍ତି ଓଡ଼ିଆ କମିସନର
ଥିଲେ 'ସେନାପତି' ଓଡ଼ିଆଙ୍କର
କାଠଯୋଡ଼ି କୂଳେ ଥାଇ ବଙ୍ଗଳା
ପ୍ରାତଃ ଭ୍ରମଣରେ ମନ ବଳିଲା
ଖୁସି ମନେ ବନ୍ଧେ ବୁଲିଲା ବେଳେ
ନଈ ବାଲିରେ ସେ ଦୃଶ୍ୟ ଦେଖିଲେ
ଆଇ. ଜି. ଙ୍କୁ ଡାକ ଦେଲେ ଖବର
କହିଲେ, ହଗୁରା ଲୋକଙ୍କୁ ଧର

ପାଞ୍ଚ ଆଣ୍ଟନର ଦୁହାଇ ଦେଇ
ହଗୁରଙ୍କୁ ଧରି ପୁଲିସ ନେଇ
କଚେରୀରେ ଯେବେ ହାଜର କଲେ
ପ୍ରମାଣ ଅଭାବେ ଖଲାସ ହେଲେ
ସେବର ଏମ୍. ପି. ମୁଣ୍ଡ ଖେଳାଇ
ପୁଲିସଙ୍କୁ ଦେଲେ ବୁଦ୍ଧି ବତାଇ
ପରଦିନ କଡ଼ା ପାଞ୍ଚ ଆଣ୍ଟନ
ବିନା ସଉଡରେ ଚଳେ ବାହ୍ମଣୀ
ଦୋଷୀ ବିଜେ କଲେ କଚେରୀ ଘରେ
ନାକ ଫାଟିଗଲା ବିଷ୍ଠା ବାସରେ
ପୁଚ୍ଛିଲେ ହାକିମ ଏ ଗନ୍ଧ କିସ
ପୋଲିସ ଦେଲେଟି ମୁଡ଼କି ହସ
କହିଲେ ହଜୁର ! ପ୍ରମାଣ ପାଇଁ
ହଗିବା ଥାନରୁ ଆସିଛୁ ନେଇ
କହିଲେ ହାକିମ, ହେଲା ବହୁତ
ଦଣ୍ଡ ମୁଁ ଦେଉଛି ଚଞ୍ଚଳ ଉଠ
କଟକେ ମଇଳା ସାକ୍ଷୀ ପ୍ରମାଣ
ନେତାଙ୍କୁ କରଅ ବେଗେ ଆଘ୍ରାଣ
ହଗୁର ପିଲା ଓ କୁକୁର ଧରି
ଅଫିସ ଭିତରେ ଢଅ ହେ ଗୁଣ୍ଡି
ତା' ନହେଲେ କିଏ ଦୁଃଖ ବୁଝିବ
ପୂତି ନରକରେ ଚାଲଣ ଯିବ ।



# ସ୍ୱାୟତ୍ତ ଶାସନ ଦିବସ

କ୍ଷମତା ଲୋଭରେ ଜାତୀୟତା ଭାବ ହୋଇଲାଣି ଏବେ ଶେଷ
ସ୍ୱାୟତ୍ତ-ଶାସନ ଦିବସ ପାଳୁଛି ପୁଣି ଏ ସ୍ୱାଧୀନ ଦେଶ
ମ୍ୟୁନିସିପାଲିଟି ପଞ୍ଚାୟତ ବୋର୍ଡ଼ ଭୋଟ୍ ପରେ ଭୋଟ୍ କରି
ପଙ୍ଗୁ କରି ସବୁ ବାତିଲ୍ କରଣ ସର୍କାର ଧରେ ତା ଡୋରି
ମୁଷ୍ଟିମେୟ ସେହି ଇଂରେଜ ଶାସକେ ଏହି ଦେଶ ଲୋକ ଧରି
ଭାଇ ଭାଇ ମଧ୍ୟେ ବିଭେଦ କରିଲେ ନାନା ପେଂଚ ପାଂଚ କରି
ସୃଷ୍ଟି ହେଲା ତହୁଁ ରାଜା ଜମିଦାର 'ହାଁ'ଜି ବାବୁ, ଆଜ୍ଞାଦଳ
ପଛ ଗୋଡ଼ାଣିଆ ଭୃତ୍ୟ ଦଳ ଧରି ଚାଲିଲା ଶାସନ କଳ
ଜାତୀୟତା ବହ୍ନି ସ୍ଫୁଲିଙ୍ଗ କୁହୁଳି ପାଇକ ବିଦ୍ରୋହ କଲେ
ଧୀରେ ଧୀରେ ଅଗ୍ନି ଶିଖା ମେଲାଇଲା ବଙ୍ଗ ବିଭାଜନ ବେଳେ
ବିପ୍ଳବୀ ଜନେ ଇଂରେଜ ଶାସନେ କରିଥିଲେ ଥରହର
ରକତର ଟୀକା କପାଳରେ ପିନ୍ଧି ମାତିଲେ ଯୁବକ ଦଳ
ଚିଟାଗଙ୍ଗ ବୁକେ ଫୁଟିଥିଲା ବୋମା ଅସ୍ତ୍ରାଗାର ହେଲା ଲୁଟି
ଉତ୍ତର ଦକ୍ଷିଣେ ପୂରବ ପଶ୍ଚିମେ ଅଗ୍ନି ଉଠୁଥିଲା ନାଚି
ଭୁକିଲା କୁକୁର ମୁଖ ବନ୍ଦ ପାଇଁ ମାଉଁସ ଫିଙ୍ଗିଲା ପରି
ସ୍ୱାୟତ୍ତ-ଶାସନ ଲୋଭ ଦେଖାଇଲେ କୌଶଳେ ଏ ଦେଶ ଅରି
ସ୍ୱାଧୀନତାକର୍ମୀ ଭିତରେ ବିଭେଦ ଜାଗିଲା କ୍ଷମତା ପାଇଁ
ଇଂରେଜ ଶାସକେ ନିଶ୍ୱାସ ମାଇଲେ କ୍ଷମତା ଟୁକୁରା ଦେଇ
ଭୁଲି ତ ନଥିଲେ ବିପ୍ଳବୀ ବୀରେ ହସି, ଝୁଲୁଥିଲେ ଫାଶି
ବଡପେଲ୍‌ଦଳ 'ବାହାଦୂର'ମାନେ ଯେ ଶାସନେ ଥିଲେ ପଶି
କାଳକ୍ରମେ ପରା ସବୁ ବଦଳିଲା ଅହିଂସ-ଯୁଦ୍ଧର ଡାକେ
ବିପ୍ଳବୀ ରକତ ଶିଥିଳ ହୋଇଲା ଚାଲି ଅହିଂସାର ବାଟେ

ବିଶ୍ୱଯୁଦ୍ଧ ପରେ ଖଣ୍ଡ ଖଣ୍ଡ କରି ସମସ୍ତ କ୍ଷମତା ଫିଙ୍ଗି
ଖାଲି ହାତେ ସିନା ଗୋରା ଲେଉଟିଲେ ଏ ଦେଶ ପଡ଼ିଲା ଭାଙ୍ଗି
କ୍ଷମତା ପାଇଁ କି ନେତା କରିଥିଲେ ଭାଗ ଭାଗ ଏଇ ଦେଶ
ଏତେ ବର୍ଷପରେ ସେ ଦଙ୍ଗାହାଙ୍ଗାମା ନହୋଇଲା କେବେ ଶେଷ
ଶାସନ ଚାଲିଛି ନାଲିଫିତା ତଳେ ସ୍ୱାଧୀନତା ଚୁପ ମାରି
ଇଂରେଜୀ ଗତିରେ ଚାଲିଅଛି ସବୁ ତାଙ୍କ କଳା କପି କରି
ଶ୍ରେଷ୍ଠ ପଞ୍ଚାୟତ ବାଛି ପୁରସ୍କାର ଦେଉ ଅଛନ୍ତି ସଚିବ
ଦରଖାସ୍ତ ପାଇଁ ଠାଉଠରେ ଭିଡ଼ କିଏ ନେବ, କିଏ ନେବ
କାହିଁ ପଞ୍ଚାୟତ ମଫସଲ ସବୁ ଏବେ ତ ଠାଙ୍ଗରା ଭୂଇଁ
କୂପନଳ ସବୁ ଶଗଡ଼ଦଣ୍ଡାରେ ଫସଲ ରହିଛି ଶୁଖି
ରାସ୍ତାଘାଟ ସବୁ ନାଆଁକୁ ସଡ଼କ ଭିତରେ କଂକଡ଼ା ଖୋଳ
ଗାଆଁରେ ଗାଆଁରେ ବାଦ ପ୍ରତିବାଦ ଚାଲିଛି ନେତାଙ୍କ ଖେଳ ।



# ଆଜିର ଭାବନା

ଆଖି ତ ଝାପ୍‌ସା କାନ ତ ତାବଦା ଦେଖି ଶୁଣି ସବୁ କୋଳାହଳ
ଆକାଶ ବାଣୀରେ ଶୁଭୁଥିଲା ଖାଲି ଏବେ ଦୂରଦରଶନେ, ହସେ ଖେଳ
ବାର ଶତ କୋଟି ଏସିଆଡ଼ ଗ୍ରାମ ଝୁଲିଗଲା ଦିଲ୍ଲୀ ସହରରେ
ଭାରତର ନାମ କ୍ରୀଡ଼ା ଜଗତରେ କେତେ କୋଳାହଳ ସୃଷ୍ଟି କରେ
ଆସାମ ପଟର ଉଗ୍ର ଆନ୍ଦୋଳନେ ଦେଶ ହେଉଅଛି ଛଟପଟ
ପାକିସ୍ଥାନ ଖେଳ କାଶ୍ମୀର ବୁକେ ଲଗାଇଛି ଏବେ କି ବିଭ୍ରାଟ
ସିନେମା ତାରକା, ମାନ୍ଦ୍ରାଜର ନେତା ଆନ୍ଧ୍ରରେ ଉଠିଲା ସେଇ ସ୍ୱର
ସିନେମା ଓ ଖେଳ ଦେଶକୁ ଆସିବେ, ବେଶୀ ଚୁପେ ଆତ୍ମା ଥରହର
କୋଟି କୋଟି ଟଙ୍କା ଉଡ଼ୁଛି ପବନେ ଗୋଟିଏ ଟଙ୍କାର ଦାନ ପାଇଁ
ମନ୍ତ୍ରୀଡ଼ ସାହାଯ୍ୟ କାଗଜରେ ଛପା ଫଟୋ ହସେ ଦାଉଦାଉ ହୋଇ
ରାଜନୀତି ବୁକେ ଛୁରୀ ଚମକାଇ, ଟଙ୍କାର ଚାଲିଛି ବଙ୍କା ଖେଳ
ବଙ୍କାବାଟ ଦେଇ ଦେଶ ଆଗଉଛି ବଡ଼େ ହନୁ ହନେ ଗଣ୍ଡଗୋଳ
ବାଟରେ ଘାଟରେ ଗାଁଗହଳରେ 'ନାରୀର' ଇଜ୍ଜତ ଯାଏ ଚାଲି
ମନ ଧନ ଆଉ ଜୀବନ ବିପନ୍ନ ରକ୍ଷକ କରଇ ଭକ୍ଷ ନାଶ
ଜଗତେ ଭାରତ ଚମକ ଦେଖାଏ ପିନ୍ଧି ତା ସୁନେଲି ଢୋଲଖୋଳ
ବିଦେଶୀ ଅର୍ଥଙ୍କା ଋଣ ମିଳିଯିବ ପୋଡ଼ିବାକୁ ଦେଶେ ଦସ୍ୟୁଦଳ
ଖେଳ ପ୍ରାଙ୍ଗଣରେ କୋଳାକୋଳି ହିଏ, ହେଉ ଚୀନ ଅବା ପାକିସ୍ଥାନ
ରାଜନୀତି ବୁକେ ଅଟଳ ଅଚଳ ହିଂସା ଜର୍ଜରିତ ତାଙ୍କ ପ୍ରାଣ
ନିରୀହ ଜନତା ମୂକ ପାଲଟିଛି ନ ପଇଟେ ତାକୁ ପଦେ କଥା
ଭଲ ଭେଲ ଆଉ ବୁଝି ନ ପାରଇ ଅଡ଼ୁଆ ତଡ଼ୁଆ ତାର ମଥା
ପେଟେ ନାହିଁ ଭାତ ଶାନ୍ତି ଗୋଡ଼ହାତ ଭବିଷ୍ୟତ ତାର ଅନ୍ଧକାର
ମୁମୂର୍ଷୁର ସ୍ୱର କିଏ ସେ ଶୁଣିବ ଶୁଭେ ଖାଲି ଖେଳ ତାଳମାଡ଼
ଆଗେ ସିନା କେହି ଧାନମୁନ୍ଦାରୁ ବାଛୁ ଫିଙ୍ଗୁଥିଲା ଅଗାଡ଼କୁ
ଏବେ ତ ମୁନ୍ଦାର ଅଗାଡ଼ରେ ଭରା ଚୁହିଁଛି ଏ ଦେଶ ଉପରକୁ ।



## ରାଷ୍ଟ୍ରଭାଷା

ନୂତନ ଭାରତ ଆଜ ଭାଷାର ଦାଙ୍ଗରେ
ମରିବ କି ବଂଶବ ସେ କମ୍ପେ ଥରହରେ
ସ୍ୱଧର ପ୍ରତାପ କାହିଁ, କାହିଁ ଇଂରେଜର ବଳ
ମୋଗଲ ଦାସ୍ୱାଦ ଏକ ଆନ, ବିଦେଶର ଫଳ
କେ ସୁଆଦ କଏ ପିତା ଲଗୁଛି କେ କାହିଁ
ନେତାର କୁହୁକ ହସ୍ତେ ଜନତା ନାଚଇ

ଯୁବକ ଜୀବନ ବାହେ ବିଭିନ୍ନ ପ୍ରଦେଶେ
ଖୋଜନଏ ପ୍ରାଣପ୍ରିୟା ଭାବର ଆବେଶେ
ଶିଖିବ ଶିଶୁଟି ତାର ଦୁଇ ମାତୃଭାଷା
ପ୍ରଦେଶେ ଓ ଦେଶେ ପୂଜ୍ୟ ପୂରବ ତା ଆଶା
ଶିଖିବ ସେ ବହୁ ଭାଷା ବର୍ଷ ବର୍ଷ ଧରି
ନହେଲେ ଜୀବନ ବ୍ୟର୍ଥ ନ ମିଳ ଚାକିରି ।



# ହେ ଜଗନ୍ନାଥ ରଖ

ଅଦିନ ମେଘ, ମରୁଡ଼ି ଯୋଗ, ଆସଇ ପୁଣି ବଢ଼ି
ନେତାଏ ଖାଲି ଭାଷଣ ଦେଲେ, ଆକାଶ ପଥେ ଉଡ଼ି
ଓଡ଼ିଶା ହେବ ଶିଳ୍ପାୟିତ ଭାସିବ ଦୁଧ ମହୁ
କୁଆଡ଼ି ଧନ କୁଆଡେ ଯାଏ ବଢେ ବଜାର ଭାଉ
ଟାଇଲି ଘର ହରିଜନଙ୍କୁ ବଣ୍ଟା ପାଇପ୍ ପାଣି ପାଇଁ
ପୁରୁଣା ନେତା ବକ୍ତୃତା ଦେଇ କଏ ଗଲେଣି କାହିଁ
ଏବର ମଂତ୍ରୀ ପୁଞ୍ଜିଏ କହେ ସହରେ ଫୁଟି ଫୁଲ
ସ୍ୱର୍ଗପୁରୀ ପାଲଟିଯିବ ନଗର, ପଥ ଘର
ବଢ଼ଇ ମଶା ଉଡ଼ଇ ହଂସା ଜରରେ କଏ ଥରେ
ଚିକିତ୍ସା ପାଇଁ ଲାଇନ୍ ଦେଇ ମରଣେ କଏ ଫେରେ
କାଗଜ କହେ କେଉଁ ସହରେ ଚିକିତ୍ସା ବିନା ପିଲା
ହାସପାତାଲ ଆସିବା ବାଟେ ପ୍ରାଣ ତା ଉଡ଼ିଗଲା
ସ୍ୱାସ୍ଥ୍ୟ ମଂତ୍ରୀଏ ଧମକ ଦିଏ ଡାକ୍ତରଟା ଦୋଷୀ
ଇସ୍ତାହାର ବାହାର କରେ ଲୋକଙ୍କୁ କରି ଖୁସି
ଜବରଦସ୍ତି ମିଳିବ ସେବା ଭାବେ ଏ ସରକାର
ଗୁହଳୁ ଦ୍ୱାରେ ଧମକାଇଲେ ଦଅଁ କି ଦେବେ ବର
ଶିକ୍ଷାମଂତ୍ରୀ ହୋଇ କାତର ଯୁବକ ଘରେ ଡର
କସ ଭାବନ୍ତ କହନ୍ତ କସ ବୁଢ଼ା ବାଉଳ ପରି
ପଢ଼ିଲେ ପାଠ ଦୁଇ ବରଷ ଏକା କ୍ଲାସରେ ପିଲେ
ଏ ନୂଆ ପାଠ ଆଗେଇ ନବ ପିଲାଙ୍କୁ ଧାନ ବିଲେ
ସବୁ ବିଭାଗେ ଖାଲି ବଦଳି ଖଂଜଣୋଖାନା ଖାଲି
କରିଣ ଋଣ ଶୁଝିବ ଦେଶ ଆଗକୁ ଯିବ ଚଳି
ପଛ ଆଡ଼କୁ ଘୋଡ଼ାର ମୁହଁ ଆଗ ଆଡ଼କୁ ରଥ
ଓଡ଼ିଆ ଡାକେ ବିକଳ ମନେ ହେ ଜଗନ୍ନାଥ ରଖ ।



# ବିସ୍ମରଣ

ଚଇଁ ଚଇଁ ଛୁଆ ମାଗଇ ଆଧାର
କୋଠର ମାଡ଼ର କୋଣେ
ମାତାର ହୃଦୟ ଅଥୟ ହୁଅଇ
ପୋକ ଯୋକ ଖୋଜ ବଣେ
ଆଧାରଟି ଧରି ସିନେହ ଆଦରି
ଖୁଆଏ ଛୁଆରେ ଭେଟି
ସ୍ୱାର୍ଥ ବିଶୋରି ପାଳଯାଏ ଛୁଆ
ନିଜର ଆଧାର କାଟି
ସମସ୍ତ ସୁଅରେ ଭାସିଯାଏ ସ୍ନେହ
ସେଇ ପୋକ ପାଇଁ କଳି
ପୁଅର ମୁହଁରୁ ଛଡ଼ାଇ ଖାଏ ସେ
ଡାହାଣୀଠୁଁ ଯାଏ ବଳି
ଠିକ୍ ଭୁଲ୍ ପାଇଁ ନାହିଁ ଅନୁତାପ
ସ୍ମରଣ ଶକତି ନାଇଁ
ମଣିଷ ପରି ସେ କାନ୍ଦେନାହିଁ ବସି
ଅନୁସରି ପଛ ପାଇଁ
ନାହିଁ ଅପମାନ ନାହିଁ ଅଭିମାନ
ଇତିହାସ ତାର ନାହିଁ
ବିଧାତା ନଠୁରି ମଣିଷର ପାଇଁ
ସାଇତିବା ମନ ଦେଇ
ଯୁଗଯୁଗ ଧରି ବିଦ୍ରୋହୀ ମନ
କରିଅଛୁ କେତେ ଅଳି
ଛାଡ଼ିଛୁ ସମାଜ ହୋଇ ଯୋଗୀ ଜନ
ନିଜ ସୁଖ ଦେଇ ବଳି ।



# ପରିତ୍ୟକ୍ତ କୁଟୀର

ଭଙ୍ଗିଲଣି କାନ୍ଥ ଉଡ଼ୁଛି ତ ଚାଳ
ଦୁଆର ବନ୍ଧ ତ ପଡ଼ୁଛି ଭାଜ
ଝରକା କବାଟ ଦୁଃଖରେ କାନ୍ଦନ୍ତି
ଜର୍ଜର ଶବ୍ଦରେ କାନ୍ଥେ ଆଉଜ
ଉଠୁନାହିଁ ଧୂଆଁ ରନ୍ଧନ ଶାଳରୁ
ଇନ୍ଦୁଡ଼ ଶାଳରେ ନ କାନ୍ଦେ ଶିଶୁ
ବରାଡ଼ ମିଆଉଁ କୁକୁରର ଭେଉ
ଗାଈ ହମ୍ବା ରବ ନ ଶୁଭେ ସେଠୁ
ଝର୍ ଝର୍ ଝର୍ ବରଷାର ଧାର
ନାଚଇ ସେ ଜୀର୍ଣ୍ଣ ଘରର ବୁକେ
କେବେ ରୁଦ୍ର ରଶ୍ମି ନଖାଙ୍କ, ପ୍ରତି ରନ୍ଧ୍ରେ
ମାନବର ଶେଷ ସ୍ମୃତି ପରଖେ
ବଛୁଆତ ଲତା ମାଡ଼େ ଦର୍ପଭରେ
କୁଆମଇତାକୁ ସଂଗରେ ଧରି
ଝିଣ୍ଟିକା ଝିଂକାର ଉଅନ୍ତ ମଉଳେ
ଝିଣ୍ଟିପିଣ୍ଟିକୁ ଦୂରକୁ ତଡ଼ି
ବଣ କଣ୍ଟାବୁଦା ଝରକାକୁ ଭେଦି
ଘରେ ଉଁକି ମାରେ ଚଟାଣ କୁଦ୍ଧ
ଏଣ୍ଡୁଅ ବୁଡ଼ାର ପଛରେ ଥାଆନ୍ତି
ଦେଖିବାକୁ ଘର ଭିତରେ ଉଣ୍ଡି
ଯାଇଛି ଚଟିଆ ଝିଣ୍ଟିପିଣ୍ଟି ସଙ୍ଗେ
ନୂଆ ଗାଁଠିରେ ଖୋଜ ତା ଘର
ନାଗ ଚଂପ ଜଗି ବସନ୍ତି ମୂଷିକେ
ଉପରୁ ଶୁଭଇ ପେଚକ ସ୍ୱର
ଗୁଡ଼ ନଈବଢ଼ି ଘର ସାମନାରେ
ବାଲିବନ୍ତ ଢଣେ କି ଦାଉ ଦାଉ
ଯେ ବନ୍ଧୁ ବାଂଧବ ନିତ ଆସୁଥିଲେ
ପଡ଼େନାହିଁ ତାଙ୍କ ପାଦ ତ ଆଉ ।

●

# ଅଭିଶପ୍ତ ପ୍ରଦୀପ

ବଂଚଇ ଜୀବ ଜଗତ ମରଣ ସେପାରେ
ପ୍ରେମ ସୂତ୍ର ଖିଅ ଧରି ସନ୍ତାନ ରୂପରେ
ବଂଶବାର ଏ ପ୍ରବୃତ୍ତି ପ୍ରକୃତିର ପ୍ରାଣ
'ଶଶକ' ବା ହିଂସ୍ର ଜୀବ ସବୁରି କାରଣ
ଗହନ କାନନ ଭେଦି ପ୍ରେମର ଝଙ୍କାର
ଅସ୍ରଇଲା ନିଶୀଥରେ ବ୍ୟାଘ୍ରର ଅନ୍ତର
ବ୍ୟାଘ୍ରୀର ପ୍ରେମ ଡାକସ୍ର ବଂଶବା ପିପାସା
ଚିର ବନ୍ଦୀ ବ୍ୟାଘ୍ରମାନେ ଜଗାଇଲା ଆଶା
ପ୍ରଳାପ ଉତ୍ତର ଦେଲା କାନନ ସ୍ୱଣୀରେ
ଅଜାଣତ ଆବାହନ ବନ୍ଦୀଶାଳା ପୁରେ
ନିସ୍ତବ୍ଧ କାନନ ବକ୍ଷେ ନାଦ ପ୍ରତିନାଦ
ପ୍ରେମ ଚୁମ୍ବକରେ ଟାଣି କରିଲା ଉନ୍ମାଦ
ପ୍ରେମ ପାଗଳିନୀ ବ୍ୟାଘ୍ରୀ ପ୍ରେମର ନିଶାରେ
ଲମ୍ଫଦେଲା ମେଘନାଦ ପ୍ରାଚୀର ଉପରେ
ପଚିଖା ପହଁରି ଗଲା ବାଲୁକାକୁ ନେଇଁ
'ପ୍ରଦୀପ' ଧରିଲା ଜାକ କଣ୍ଟୁଷଣ ପାଇଁ
ପ୍ରେମସିକ୍ତ ମନ ତାର ପ୍ରେମ ଆଲିଙ୍ଗନେ
ପୂର୍ଣ୍ଣତା ପ୍ରାପ୍ତିର ସଙ୍ଗେ ତୃପ୍ତ ହେଲା କ୍ଷଣେ
ପ୍ରଦୀପରେ ନାହିଁ ତାର ଆଉ ପ୍ରୟୋଜନ
ମନେ ପଡ଼ିଗଲା ପୁଣି ତା'ର ପ୍ରିୟ ବନ
ଅମୁହାଁ ମନ୍ଦରେ ବାଟ ଅଣ୍ଡାଳି ଅଣ୍ଡାଳି
ରୋଷଭରେ କାତରରେ ଗୁଡ଼ଇ ବୋବାଳି

ଅସହ୍ୟ ହୋଇଲା ତାଠର ବନ୍ଧନର ଘର
ଲୁହାବାଡ଼େ ମୁହଁ ଘଷି ବୁହେ ରକ୍ତ ଧାର
'ପ୍ରଦୀପ' ଜନମି ଥିଲ ପିଂଜରା ଭିତରେ
ମୁକ୍ତିର ସ୍ୱାଦ ସେ କେଭେଁ ଚାଖି ନାହିଁ ଥରେ
ସ୍ୱାଧୀନତା ଲୋଡ଼େ ସିନା ମୁକ୍ତ ବିହଙ୍ଗମ
ଗ୍ରାମ୍ୟ କୁକୁରର ପକ୍ଷେ ସ୍ୱାଧୀନତା ଯମ
'ପ୍ରଦୀପେ' ଜାଣିବ କିଂପା ମୁକ୍ତିର ମମତା
ପ୍ରିୟାର ଉଗ୍ର ମୂରତି ଦିଏ ମନେ ବ୍ୟଥା
ଆଗ୍ରହେ ବଳଇ ପୁଚ୍ଛି ଯାଇ ତାର ପାଶେ
ଚେଷ୍ଟାଭରେ ମନମାରି ଫେରଇ ନିରାଶେ
ପାଶେ ଥାଇ ବହୁଦୂରେ ରହେ ତା' ମାନସୀ
ପ୍ରେମ ଦଗ୍ଧ ମନ ତାର ଯାଏ ଆପେ ଲସି
ଝୁରି ଝୁରି ଅନଶନେ ରହିଲା ସେ ପଡ଼ି
ଅଭିମାନେ ପ୍ରାଣବାୟୁ ଗଲା ଉଡ଼ି ।



---

(ନନ୍ଦନ କାନନ ଘେର ଭିତରକୁ ଡେଇଁଥିବା ଜଙ୍ଗଲର ବ୍ୟାଘ୍ରୀ 'କାନନ'ର ପରେ ନନ୍ଦନ କାନନର ବ୍ୟାଘ୍ର ପ୍ରଦୀପ ସହିତ ମିଳନ ଓ ପରେ 'ପ୍ରଦୀପ'ର ମୃତ୍ୟୁରେ ଲିଖିତ ।)

# ବସନ୍ତ ପକ୍ଷୀ

( ଗୃଧ୍ରସ୍ୱର ଶୋକ )

ବିଶ୍ୱାସେ କେ ଦେଲା ବର୍ଷ ଭରି
ସଂସାର ଜଂଜାଳେ ମନ ମାରି
ସୁମରି ସେ କେଉଁ ଅଭିଶାପେ
ଝୁରୁଥିଲ ତୁମେ ଅନୁତାପେ
ହରିତ ତନୁଟି ଢଳ ଢଳ
ବାସ କଂଜୁ ତବ ଟଳମଳ
ଥାଇ ପ୍ରିୟା ପାଶେ ପୂର୍ବପର
ଯାଇଛ ସେ ଦୂରେ ଅପସରି
ଗମ୍ଭୀର ବୃଦ୍ଧାଣୀ ବଳ ବଳ
ଜୀବନେ କରାଇ କଲବଲ
ଦାରୁଣ ଶୀତର ଅନୁଭୂତି
ଦିବସକୁ କରେ ଅମାରାତି
ପ୍ରେମ ଆବେଗରେ ଥରି ଥରି
ଫେରିଆସ ତୁମେ ଉଡ଼ି ମରି
ଦୂର ଘରଚାଳ ନର୍ଦ୍ଧମାରେ
ପ୍ରତିଧ୍ୱନି ଦେଲା କିଏ ଥରେ
କାନେ ବାଜେ ସେହି ପ୍ରୀତି ଡାକ
ହୃଦେ ଖେଳାଇଲା କି ଚମକ
ଗୋଡ଼ କାଢ଼ିଗଲା ଧୀରେ ଧୀରେ
ଭରିଦେଲା କାକ ଚୁମ୍ବନରେ
ମୁହୂର୍ତ୍ତେ ତ ସବୁ ଗଲା ଭୁଲି
ଧରାକୁ ମଣିଲ ସରା ଭଳି
(କିନ୍ତୁ) ଲାଗିଲା ଗଳାରେ କଳାଦାଗ
ଧାତ୍ରୀ ତନୁ ପାଏ ପରାଭବ
ଜୀବନର ସେହି ଅନୁଭୂତି
ପରଶେ ଅନ୍ତରେ ଆଶୁ ଭୀତି
ମହର୍ଗରୁ ଯାଇ କାନ୍ତାରରେ
ପଡ଼ି କୋହ ଆସେ ଅନ୍ତରରେ

# ପ୍ରତିଧ୍ୱନି

(ପ୍ରେମିକର ଆତ୍ମଦାନ)

ମଧୁ ବସନ୍ତ ବାତରେ ଥରି ଥରି ବଉଳ ସୁବାସେ ମନ ଭରି
କଳାବୁକୁ ତଳେ ଧରି ଆଶା
ଫୁଟେ ନାହିଁ 'କାକ' ମୁଖେ ଭାଷା

ତାର ଅନ୍ତରର କ ଆଶ୍ୱସେ ଭରସି ବସିଲା ପିକ ପାଶେ
ଧୀରେ ସେ କହିଲା ପିକ ରାଣୀ
ଥରେ ମାତ୍ର ତୋର ଶୁଣା ବାଣୀ

ସେ ମଧୁର ବାଣୀ ପରଶରେ ମୋ ପରାଣ ନାଚୁ ହରଷରେ
ଚମକିଲା ପିକ କାକେ ଚାହିଁ
ଘୃଣାରେ ତା ମନ ଗଲା ଲଇଁ

ତାଚ୍ଛଲ୍ୟେ କହିଲା ମୁହଁଗୁଣ୍ଠି ଏଡ଼େକ କୁତ୍ସିତ ତୋର ଜାତି
"କି ସାହସେ ପାଶେ ଗଲୁ ବସି
ତୋ ମରଣେ ମୁହିଁ ହେବି ଖୁସି"

କାକୁତିରେ କହେ 'କାକ' ଧୀରେ ହେ ବସନ୍ତରାଣୀ ଗାଅ ଥରେ
ତୋ 'ଗୀତ' ବାସନା ଚିତେ ଧରି
ଆସିଅଛି ମୁହିଁ ଗାଆଁ ଛାଡ଼ି

ନରଖ ନଜର ମୋତେ ବାରେ ତୋ ଶୁଭ କାମନା ମୁହିଁ କରେ
ଆଖି ତରାଟି କହିଲା ଧୂର୍ତ୍ତ ପିକ
ଦିନୁ ଦିନ ବଢ଼େ ତୋ ସାହସ

ତୋର ସେ କର୍କଶ ସ୍ୱର ବାଜ ମୋର ଶାନ୍ତ କାହିଁ ଯାଏ ଭଜ
ଦୂର ତୁ ନ ହେଲେ କ୍ଷଣକରେ
ଉଡ଼ି ଚାଲିଯିବ ବହୁ ଦୂରେ

ହୃଦୟେ ଲଗିଲା କ ପବଣ କାକ ଛାଡ଼ିଗଲା ତାର ପାଶ
ଲୁଚି ସେ ବସିଲା ବୃଦା ମୂଳେ
ପିକ ଗୁଣଗାନ ବସି ଭାଳେ

ମନେ ତାର କସ ଭାବ ଜାଗେ ଗ୍ରୀବା ଉଚ କରି ପିକ ରାବେ
ମଧୁର ସଙ୍ଗୀତ ମୂର୍ଚ୍ଛନାରେ
ପିକ ତାର ମନେ ମନେ ଭାଳେ

'କାକ' ଶୁଣୁଥିବ ତା ସଙ୍ଗୀତେ କୃତଜ୍ଞତା ଭରି ତାର ଚିତ୍ତେ
ଏପରି ସମୟେ ଶବ୍ଦ ବାରି
ଝୁରି ବ୍ୟାଧ କାହୁଁ ଆସେ ଚାଲି

ଛାଡ଼ିଦେଲା ତାର ଶର ଯୋଖି ଶିହରି ଉଠିଲା କାକ ପକ୍ଷୀ
ବାଣରେ ଶରକୁ ଛାଡ଼ିପରେ
ଅଟକାଇଲା ସେ ଗରବରେ

ମରଣର ଛାପ ଦେଖି ଭରି ବାଣେ କଂପି କଂପି ଗଲା ପଡ଼ି
ଧ୍ୟାନ ଭଙ୍ଗେ ଚାହିଁ ପିକ ତଳେ
ପ୍ରତିଧ୍ୱନି ଉଠେ କାନନରେ

"କ ସାହସେ ପାଶେ ଗଲୁ ବସି ତୋ ମରଣେ ମୁହିଁ ହେବି ଖୁସି"



# ମୁଦ୍ରିତ କଳିକା

ଦୃଢ଼ ମନେ
ଗୁପି ଧରି
ରଖିଛୁ କଳିକା
ମୁଦ୍ରିତ ତା ସମସ୍ତ ପାଖୁଡ଼ା
ରଖିଅଛୁ
ସଗୋପନେ
ସମସ୍ତ ସୌନ୍ଦର୍ଯ୍ୟ
ଆଜ ଅନ୍ତରର ମଧୁ
ଯାହାକୁ ଖୋଲିବ ଦିନେ
ଅକସ୍ମାତ
ଭବିଷ୍ୟର
ସଫଳ ମୁହୂର୍ତ୍ତ
ସେହି କଳିକାର
ଉଦ୍‌ଘାଟନ ପାଇଁ
ଅସ୍ଥିର ଛାଉରେ
ଥରି ଥରି ଗ୍ଭଲିଯାଏ ହାତ
ଖେଳିଯାଏ
ହୃଦୟରେ
ଅଜାଣତ
ସହସ୍ର କମ୍ପନ
ଗୋପନର ଉଦ୍‌ଘାଟନେ
ମଞ୍ଚଚକା ପଛେ ଧାଇଁ
ଉଦାସରେ କେତେ ମନ
ଆପେ ଯାଏ ଭୁଲି
ଅକାଳରେ ଖୋଲେ ନାହିଁ
ସେ କଳିକା
ଗୁହିଁ ରହେ
ସେ ଶୁଭ ମୁହୂର୍ତ୍ତ
ଦେବାପାଇଁ
ସୌରଭ ବିଞ୍ଚାଇ
ଆକର୍ଷଣ କରିବାକୁ
ପ୍ରଣୟୀ ମଧୁପ ।



# ଆଶା ନଗରୀ

ସ୍ପିରିଚ୍ୟାଲ ନଦୀ ତୀରେ ସୁନ୍ଦର ସହର
ତାର ନାମ ଯେ ଅଟଇ 'ଶାନ୍ତ୍ୱନା ନଗର'
'ସନ୍ତୋଷ' ପଡ଼ିଆ ତାକୁ ରଖିଅଛି ଘେରି
'ଡରନାହିଁ' ପରବତ ପାଦଦେଶ ଭରି
'ଖୁସିବାସ' ପଥ ସବୁ ଲମ୍ବିଅଛି ଦୂରେ
'ଆଶିଷ' ପୁଷ୍ପର ତରୁ ଅଛି ଦୁଇ ଧାରେ
'ନ ହରାଅ ଧୈର୍ଯ୍ୟ' ଆଉ 'ଭରି ଆଶାଗର୍ଭା'
ବୃକ୍ଷମାନ ମୁଣ୍ଡ ଟେକି ହୋଇଛନ୍ତି ଉଭା
'ଉତ୍‌ଫୁଲ୍ଲ' 'ଖୁସିହୁଅ' 'ଦବନାହିଁ' ଭଳି
ବୃକ୍ଷଆଡ଼େ ଫୁଟିଅଛି କେତେ ଫୁଲକଳି
'ମନୋବଳ' ପ୍ରଦେଶର ଏ 'ଆଶା ନଗରୀ'
ସୁଖରେ କାଟନ୍ତି ଦିନ ସବୁ ନରନାରୀ ।



# ସୌନ୍ଦର୍ଯ୍ୟ

ହେ ସୌନ୍ଦର୍ଯ୍ୟ
ଦେଖେ ମୁଁ ତୁମକୁ
ସକାଳର ସଦ୍ୟସ୍ନାତ
ପୁଷ୍ପ ପାଖୁଡ଼ାରେ

ମୁଁ ତୁମକୁ ଦେଖେ ପୁଣି
ସୁଲୁ ସୁଲୁ ବାଆ ଦେହେ
ବାଇଆ ଚଢ଼େଇ ବସା
ମୃଦୁ ଦୋଳନରେ

ଦେଖେ ଅବା
ଫଗୁଆ ସୂର୍ଯ୍ୟ କିରଣେ
ଦୋଳୁଥିବା ଛଳଛଳ
ମୁକୁତା ବିନ୍ଦୁରେ

ତୁମେ ରହିଥାଅ ଟେଇଁ
ନଦୀବକ୍ଷେ ସାନ ବଡ଼ ମୀନଙ୍କର
କୁଦାକୁଦି ଡଆଁ ଡେଇଁ
ରୁପେଲି ନାଚରେ

ତୁମେ ପୁଣି ଦିଅ ଦେଖା
ଉତ୍ତପ୍ତ ଧରଣୀ ବୁକେ
ମଧ୍ୟାହ୍ନରେ ଆମ୍ର କୁଂଜେ
କୋକିଳ କୂଜନେ

ବର୍ଷାର ଆଗମେ
କିଂବା ଗୋଧୂଳି ଲଗନେ
କେକରାଜ ପୁଚ୍ଛଗୁଚ୍ଛ
ନୃତ୍ୟ ସୌରଭରେ
ମୁଁ ତୁମକୁ ଦେଖିଅଛି
ନିର୍ଜନ ପର୍ବତେ
ପୁଣି ଜନାକୀର୍ଣ୍ଣ ସହରର
କୋଳାହଳ ତଳେ
ତୁମେ ଥାଅ
ଗିରିବାଳା
ନିଷ୍କପଟ ହାସ୍ୟେ ଅବା
ପଲ୍ଲୀବାଳା ମଙ୍ଗଳ ଗୃହରେ
ଥାଅ ତୁମେ ପୁଣି
ବଳାସିନୀ
ସିନେମା ରାଣୀର
ସାଜସଜ୍ଜା ସ୍ନୋ ପାଉଡ଼ରେ
ହେ ସୌନ୍ଦର୍ଯ୍ୟ
ମନ ମୋର ଦେଖଇ ତୁମକୁ
କେତେବେଳେ କେଉଁପରି
ଅବା କି ରୂପରେ
ଦେଖଇ ତୁମକୁ ମୁହିଁ
ଜାଗରେ ଅବା
ସ୍ୱପନର ଅଜଣା ଉହାଡ଼େ
ମହାକାଳ ଗୋପନ ମନ୍ଦରେ ।



# ଅମୂଲ୍ୟ ମଣି

ଫଗୁଆ ଆକାଶର ମଙ୍ଗଳ ବେଣୀପରେ
ପ୍ରଭାତ ଉଦିତ ହୁଏ
ବିହଙ୍ଗର କାକଳି ରବରେ
ମୋ ଗୃହର ଘନ ଅନ୍ଧକାର ଠେଲି
ମୋର ଯେ ସକାଳ ହୁଏ
ଅନାବିଳ ଶିଶୁ କ୍ରନ୍ଦନରେ
ବସନ୍ତର ଝୁଲୁ ଝୁଲୁ ଅଣ୍ଡାବାଆ ସାଥେ
ମଧୂପ ମଧୁ ଗୁଂଜନେ
ଭାସେ ପୃଥ୍ୱୀ ଆନନ୍ଦ ସ୍ରୋତରେ
ଦେଖିକୁ ମୋ ଜାକଧର ଶିଶୁ ମୋର କୋଳେ
ଅଳି କରେ ଗପ କହ
ତାଠାରୁ ଆନନ୍ଦ ନାହିଁ ଅଧିକ ସଂସାରେ
ବୀଣା ଝଙ୍କାର ସଙ୍ଗୀତ ଜଗାଏ ପୁଲକ ମନେ
ମନ ମଜ୍ଜିଯାଏ ତହିଁ
ଭୁଲିବାକୁ ସଂସାର ଜଂଜାଳେ
ଶିଶୁଟିର ଭଙ୍ଗା ଭଙ୍ଗା ଦେଶୋଟି ବଚନେ
ହଜିଯାଏ ମୋର ମନ
ବୁଡ଼ିଯାଏ ଅଜଣା ସାଗରେ
ଓଡ଼ିଶୀ, ଦକ୍ଷିଣୀ ଅବା କୁଚ୍‌ପୁଡ଼ି ନାଚେ
ଆଖି ପଡ଼ି ଲାଖି ରହେ
ନାଟ୍ୟକାର ଅଦ୍ଭୁତ ଭଙ୍ଗୀରେ

ଦେହଦଳ ପିଠିପରେ ନାଚୁଥିଲେ ଶିଶୁ
ସେ ନାଚକୁ ବଳି ଆଉଁ
ନାହିଁ ନାଚ ଦୁନିଆ ବୁକୁରେ
ସ୍ନାନ ସାରି ଦେବାର୍ଚ୍ଚନେ ପଶେ ମୁଁ ମନ୍ଦରେ
ପ୍ରଣାମ ଜଣାଏ ମୁହିଁ
ନୀରବ ତ ପ୍ରତିମା ଦେଉଳେ
ଭୋଗ ମାଗି ଯେତେବେଳେ ଧାଇଁଆସେ ଶିଶୁ
ଦେବତା କହଇ କଥା
ପୂରେ ପ୍ରାଣ ସେହି ଲଗନରେ
ବେଦଗୀତା ଅଧ୍ୟୟନ ଭକ୍ତଙ୍କ ପ୍ରାର୍ଥନା
ସଂସାର ନିର୍ଯ୍ୟାତନାରୁ
ମୁକ୍ତି ପାଇଁ ରହିଛି ବାଟରେ
ଘରେ କିନ୍ତୁ ରହିଅଛି ଖୋଲା ବହି ଶିଶୁ
ଭୁଲିବାକୁ ମନସ୍ତାପ
ସଂସାରର ଜଂଜାଳ ଭିତରେ
ସୁନା, ରୂପା, ହୀରା ମଣି ରହିଥାଏ ଗୁପ୍ତେ
ଲୁଚି ମହୀର ଗର୍ଭରେ
ମାନବକୁ ମିଳେ ତାହା ତାର ଭାଗ୍ୟବଳେ
ଅମୂଲ୍ୟ ମଣି ମାଣିକ୍ୟ ଶିଶୁ ଏ ସଂସାରେ
ତାହାର ଯତ୍ନରେ ଲଭେ
ଦେଶ ଜାତି ମହା ସମ୍ପଦରେ ।



# ସୁଖ ପାଅ ଯଦି

ମୋର ରୂପ ଲାଗି ଆସ ଯେବେ ମୋର କତିକି
ଭଲପାଅ ନାହିଁ ମୋର ଅନୁରୋଧ ଏତିକି
ରୂପରେ ଝଲଇ ସୂର୍ଯ୍ୟ ଚନ୍ଦ୍ର ଏହି ଜଗତେ
ସେ ଅମର ତେଜ ପାଇବନି ତୁମେ ଗୁପତେ

ମୋର ଯଉବନେ ଯଦି ତୁମ ଥାଏ ଲାଳସା
ସେ ମଉଳା ଫୁଲେ ରଖନାହିଁ ତୁମେ ଭରସା
ଚିର ଯଉବନ ଦେନି ଆସେ ପରି ବସନ୍ତ
ସରଗ ଶୋଭାରେ ହସିଉଠେ ଏଇ ମରତ

ଧନ ରତ୍ନ ଲାଗି ଆସୁଥାଅ ଯଦି ମୋ ପାଶେ
ସ୍ୱେର ଦେନିଗଲେ ଫେରିଯିବ ତୁମେ ନିରାଶେ
ଲୋଭ ଯେବେ ତୁମ ହୀରା ମାଳା ଆଉ ମୋତିରେ
ଭଲପାଅ ଯାଇ ସେଇ ସୁଗନ୍ଧିର ସାଗରେ

ସୁଖ ପାଅ ଯଦି ମୋତେ ଖାଲି ମୋର ପାଇଁକି
ଏ ବିଶାଳ ହୃଦ ରହିଁଅଛି ତେବେ କାହିଁକି
ପଛେ ପଡ଼ିଯିବେ ରବି, ତ୍ରିଭୁରାଜ ସାଗର
ଜିଣିବ ପରାଣ, ପ୍ରେମ ଫାଶ ଡୋରେ ମୋହର ।



## ପ୍ରକୃତ ପୂଜନ

ବହୁ ରତ୍ନେ ଭୂଷିତ ବହୁ ଯତ୍ନ ସମ୍ଭୃତ
ଝଲକୁ ଥିଲୁ ଯେବେ ଉଠେ
ଚୋର ଝୁରୁ ପ୍ରକୃତ କାହିଁ ସେ ଥିଲା ଲୁଚ
ଛଳନା ଆଡ଼ୁଆଳ ମଂଚେ

କ୍ଷଣ ଉନ୍ମାଦ ନେଇ ଚୋର ବେଶରେ ବାଇ
ହୋଇଲେ ସୁଧୀଜନ କେତେ
କଂଚୁ ସେ ଆକର୍ଷଣ ହୋଇଲା ଅକାରଣ
ନକର ପାର ବଶ ମୋତେ

ଆକାଂକ୍ଷା ପକ୍ଷି ଚଢ଼ି ବୁଲିଲା ଯେବେ ଉଡ଼ି
ଦୂରେ ମୋ ମନ ଗଲା ଭୁଲି
ଏବେ ହତାଶ ହୋଇ କୃତ୍ରିମତା ହସଇ
ଉଭା ତୁ ନଗ୍ନ ଶୃଙ୍ଗ ଭଳି

ଯାଇଛୁ ରହି ସବୁ ବାସ୍ତବ ଅନୁଭବୁ
ଖେଳାଉ ଅନାବିଳ ଧାରେ
ସେ ଧାରେ ପ୍ରାଣଭର ମଥା ମୁଁ ନତ କର
ତୋହର ପଦେ ହୃଦ ଢାଳେ ।



# ଅଗ୍ନି ପୁଷ୍ପ କଳି

ବଜ୍ର ଗମ୍ଭୀର ବେଶ ସାଜ
ତପେ-ରତ ତୁଲ୍ଲି ଆଖି ମୁଜ
ତପସ୍ୱିନୀ ଅଗ୍ନି ପୁଷ୍ପ କଳି
ନୀରବେ ରହିଛୁ କାରେ ଭାଳି

ଭରମେ ମଧୁପ ଥରେ ଥରେ
ଆସି ତୋର ପାଶେ ଗରବରେ
କ୍ଷଣକ ପାଇଁକ ତୋତେ ଚୁମ୍ବି
ବାଟ ଭାଙ୍ଗି ଯାଏ ଦୂରେ କାହିଁ

ଧୀର ମୃଦୁବାତେ ଶଙ୍କି ଶଙ୍କି
ତୋ ରୁଦ୍ଧ ଶବୁକେ ହସ ଚୁପି
ମଥା ଦୋହଲାଇ ପଲକରେ
ଭାବୁ କି ? ଭବଷ୍ୟେ ଅଲକ୍ଷରେ

କାହାର ଇଙ୍ଗିତ ଅନୁସରି
କାହାପାଇଁ ଏତେ ଯାଦୁ କରି
ଅନ୍ତରର କେଉଁ କୋଠରୀରେ
ଧରିଅଛୁ ମଧୁ ଗୋପନରେ ।



# ଅଭ୍ୟୁଦୟ

ଯେ ଜୀବନ ନିଭୃତରେ
ଆରାମରେ ଶୋଇ
'ଅଣ୍ଡା'ର ଭିତରେ ଥିଲା
ସ୍ୱପନ ବିଭୋର
ବାହାରର କି ଉତ୍ତାପ
ବାଜି ତାର ଦେହେ
ନିଦ୍ରାଭଙ୍ଗେ କଲା ତାକୁ
ଏପରି ଅସ୍ଥିର
ଚହଲି ଉଠିଲା ତାର
ଉଦ୍ଦାମ ଶରୀର
ଧକ୍କାମାରି ବାହାରିଲା
ଆବରଣ ଖୋଲି
ପଛେ ଛାଡ଼ି ରହିଗଲା
ପୁରୁଣା ଜଗତ
ଡେଇଁଲା ସେ ଭବିଷ୍ୟରେ
ମୁଖେ ପକ୍ଷ ବୋଲି

ଅସ୍ଥିର ସେ ଯୁବଶକ୍ତି
ଅବୁଝା ମନରେ
ହୃଦୟର କି ସ୍ପନ୍ଦନେ
ବର୍ଦ୍ଧିଷ୍ଣୁ ମସ୍ତିଷ୍କେ
ଛାଡ଼ିଗଲେ ସମାଜକୁ
ପଳ ପଳ କରି
ଆଜି ଲକ୍ଷାଧିଏ ଭବିଷ୍ୟର
ଅନିର୍ଦ୍ଦିଷ୍ଟ ବକ୍ଷେ
କି ନୂତନ ଜୀବନର
ଦୃଢ଼ ଆକର୍ଷଣେ
ହଳାହଳ କରେ ପାନ
କା'ର ପ୍ରତୀକ୍ଷାରେ
ଆମେ କହୁ ବିବର୍ତ୍ତନ
ଛାଡ଼ି ପୁରାତନ
କିଂତୁ ଏହା ଅଭ୍ୟୁଦୟ
ଦୁନିଆ ବୁକୁରେ ।



# ଗବେଷକ

କହଇ ବିଜ୍ଞାନ
ମାନବ ଅଟଇ ଏକ
ରସାୟନ ପ୍ରକ୍ରିୟାର
ଅଦ୍ଭୁତ ସମଷ୍ଟି
ଛନ୍ଦେ ଛନ୍ଦେ
ଜୀବକୋଷ ଦେହେ
ହୋଇଅଛୁ ରସାୟନ
କାରଖାନା ସୃଷ୍ଟି
ହସ କାନ୍ଦ
ରାଗ ଓ ବୈରାଗ୍ୟ
ସବୁ ହୁଏ ନିୟନ୍ତ୍ରିତ
(କ୍ଷୁଦ୍ର କ୍ଷୁଦ୍ର ମହାକ୍ଷୁଦ୍ର)
ବିନ୍ଦୁ ତୁଳନାରେ
କେତୋଟି ମୌଳିକ ଅଣୁ
ମାନବର ଅଣାୟତ
ମହତ ସ୍ପନ୍ଦନ,
ସୃଷ୍ଟିକରେ ମାନବ ଶରୀରେ
ସେ ସ୍ପନ୍ଦନେ
ଜାଗି ଉଠେ
ଶରୀରର
ସବୁ କର୍ମମାନ
ସେହି ସେ ମୌଳିକ ଅଣୁ
ହେଲେ ଇତସ୍ତତ
କିମ୍ବା କକ୍ଷଚ୍ୟୁତ
ବଦଳେ ତା ସ୍ଥାନ

ନୂତନ ସ୍ପନ୍ଦନରେ
ଶରୀରର
କାର୍ଯ୍ୟକ୍ଷମ
ହୁଏ ପୁଣି ସୃଷ୍ଟି
ସେ ସ୍ପନ୍ଦନେ
କାର୍ଯ୍ୟ ବ୍ୟତିକ୍ରମେ
ବଦଳଇ ଶରୀରର
ଗତିବିଧି କୃଷ୍ଟି
କିଏ ଗଢ଼େ
ସେହି ଅଣୁ
କାହାର ନିର୍ଦ୍ଦେଶେ
କିଏ ତାକୁ କରଇ ଚାଳନା
କପଟି ସେ
ଧରି ରଖେ
ବଂଶୋଦ୍ଭବ ସେ ଅଦ୍ଭୁତ
ଭବିଷ୍ୟ ଭାବନା
ସୃଷ୍ଟିର ନିଗୂଢ଼ ତତ୍ତ୍ୱ
ମାନବ ସନ୍ଦିଗ୍ଧ ମନ
ପରଖି ବିଦାରେ
ଯୋଗୀ ଋଷି ଗବେଷକ
ଜ୍ଞାନର ନିଶାରେ
ଦିନ ରାତି ଧ୍ୟାନରତ
ବିଜ୍ଞାନ ମନ୍ଦିରେ ।
ଶ୍ରେଷ୍ଠ ଏହି
ଜୀବନର କାଳ
ସୀମିତ ତା
ଭାବନାର ଶକ୍ତି

ତଥାପି ମାନବ ମନ
ସଂଘବଦ୍ଧ ସମାଜରେ
ଯାଏ ରଖି ଜ୍ଞାନ ତାର
ପୁସ୍ତକରେ ସାଇତି ସାଇତି
ପୁରାତନ
ଜ୍ଞାନ ଧରି
ନୂତନର
ହୁଅଇ ଉଦୟ
ଅଜ୍ଞାନର ଅନ୍ଧକାର ଭେଦି
ସୃଷ୍ଟିର ଅମର ରହସ୍ୟ
ପଦେ ପଦେ ଗବେଷକ
ନିତି କରେ ଜୟ ।



## ଗୋଲକ ଧନ୍ଦା

ଅଜଣା ଶିଳ୍ପୀର
ଅଲୋଡ଼ା ମୁହୂର୍ତ୍ତର
ଅତର୍କିତ
ଖିଆଲ ସୃଷ୍ଟିରେ—
ନଭସ୍ତୁମ୍ବି ଆଶାର
ଅମୃତ ମୟୀ
ଆଲୋକ
ଆଜି,
ନିରଶାବୃତ
ଅତଳ ସାଗରର
ଅନ୍ଧକାର ବକ୍ଷ
ସବୁଜ
ଅନାହୂତ ସୃଷ୍ଟି ।
ସୂର୍ଯ୍ୟାଲୋକର
ଆଲୋକିତ
ଉତପ୍ତ ଧରଣୀ
ଚନ୍ଦ୍ରମାର
ଆକର୍ଷିତ ସମୁଦ୍ରର
ରୂଟେଲ
ବିଚମାଳା
ତଟତର
ଅକାରଣ
ମାହୂର୍ତ୍ତିକ
ଉଚ୍ଛ୍ୱଳତା

ସୁଖର କ୍ଷଣସ୍ଥାୟୀ
ସ୍ଥିରତାକୁ
ଆଉଡ଼େଇ ଦେବାକୁ
ଦୁର୍ବିପାକର
ଆଲୋଡ଼ନ,
ଜଉ ଅଠାପରି
ଦେହ ଓ ମନକୁ
ଜାବୁଡ଼ି ଧରେ
ଦୁଃଖର
ବିଦଗ୍ଧତା
ଉତ୍ତପ୍ତ ଜଳର
ବାଷ୍ପି କରଣରେ
ଉଭାହୁଏ
କଳାହାଣ୍ଡିଆ
ବଉଦ

କଳ୍ପନା ବିଳାସରେ
ଗଢ଼ି ଉଠେ
ବିଜ୍ଞାନର ସୌଧ
ଦୁଃଖ ଓ ସୁଖର
ମନ୍ଥନରୁ
ରୂପନଏ
ଶାନ୍ତିର କଳ୍ପନା
ଜନ୍ମର ଅଳିକତା
ମୃତ୍ୟୁର ପୂର୍ଣ୍ଣତା
ସବୁ
ଦୁନିଆ ବୁକୁରେ
ସୃଷ୍ଟିର
ଗୋଲକ ଧନ୍ଦା



# ମୁଡ଼ୁକି ହସ

ଦରିଦ୍ର ଜୀବନର
 ଦୁର୍ବିସହ ବୋଝ
  ମୁଣ୍ଡାଇ ମୁଣ୍ଡାଇ
   ହୋଇ ହନ୍ତସନ୍ତ
    କଳା କାଠ ଶୀର୍ଣ୍ଣ ଦେହ
     ଜୀର୍ଣ୍ଣ ବସ୍ତ୍ର ଧାଶ୍ଚ
      ବୃକ୍ଷକୁ ଆଉଜି ଠିଆ
       ତାର ମନ ମାରି

ତା ପାଶେ
 ଆସେ ଉଡ଼ସି
  'ସ୍ମିତହାସ' ଧୀରେ
   ଶୁଷ୍କ ଓଷ୍ଠ ଖୋଲ ତାରେ
    ସ୍ୱାଗତ ସେ କରେ

କଳା ବଉଦେ
 ଯେପରି
  ବିଜୁଳି ଝଲକ
   ହସ ଜାଗେ
    ମୁଖ କୋଣେ, ଜଗାଇ ପୁଲକ
     ସେହି ମୁହୂର୍ତ୍ତକ ପାଇଁ
      ଭୁଲି ଦୁନଆକୁ ସିଏ
       ପାଏ ସ୍ୱର୍ଗ ସୁଖ ।



# ଆଗମନୀ

ବାଳ ସୂର୍ଯ୍ୟ ରଶ୍ମିର
ସନ୍ତରଣ ବାଲି
ପୂର୍ବ ଗୋଧୂଳି ଲଗନର
ଅର୍ଦ୍ଧ ଲୁପ୍ତ
ଗୋଷ୍ପଦର ଚନ୍ଦ୍ର
ଡାକୁଥିଲା ଲୁହାଇ ଲୁହାଇ
ଅଶାନ୍ତର ସ୍ୱପ୍ନକୁ
ବୁକୁଫଟା କ୍ରନ୍ଦନ
ଲଭି ଯାଉଥିଲା
ଶ୍ମଶାନର ଧୂମ୍ର ସ୍ୱାନ
ଇଲେକ୍‌ଟ୍ରିକ ଚୁଲ୍ଲିରେ
ଆହାର ବିହୀନ
ଜଟାୟୁ ଗୃଧ୍ରର ଡେଣା
ଛିଡ଼ି ପଡ଼ିଥିଲା
ଉଡ଼ନ୍ତା କଳେବରମାନ
ଏରୋପ୍ଲେନର
ପାହାରରେ ।
ଷଡ଼ଯନ୍ତ୍ର ପରେ ଷଡ଼ଯନ୍ତ୍ର
ବୃକ୍ଷଲତା ପଶୁପକ୍ଷୀ
ସର୍ବେ ହେବେ ନିଶ୍ଚିହ୍ନ
ଘୂଳିବ ଛିନ୍ନ ମସ୍ତା
କମ୍ପ୍ୟୁଟରର ରକ୍ତୂତ
ମଶାଣି ପାଖ
ନଈ ବାଲି ଉପରର
ଅଶରୀରୀ ଭୂତ ନାଚ ସଂଗେ
ବିଦେଶୀ ନାଚ
ଭସି ଉଠିବ
ଟି. ଭି. ପରଦା ଉହାଡ଼ରେ
ଭେଜାଲ ପତକା ତଳେ
ରୁଣ୍ଡ ରୁଦ୍ର ଭବିଷ୍ୟତର
ନାଗରିକଂକର
ଶୁଭିବ ମାଇକ ଶଂଖର
ଅଶୁଭ ଆଗମନୀ
ପୁରାତନ ସଂସ୍କୃତିର
କର୍ପୂର ମହକ
ପଛିବାଳାର ଅନାବିଳ
ହସ ଟିକକ
ବାଏଁ ବାଏଁ ଉଡ଼ିଯିବ
ନବୀନତର
ନାରୀ ଜାଗରଣ
ପ୍ରଭୁର ହାଓ୍ୱାରେ ।
ଓହ୍ଲାଇବ ରୁଦ୍ର ସୂର୍ଯ୍ୟ
ଧରି ବିକଟାଳ ରୂପ
ପୁଣି ସେହି ନଈ ବାଲି
ନଗ୍ନହ ବୁକୁରେ ।

●

# ମିଠା କଥା

ଭୟଭୀତ ରଖିପାରେ ଶାସନ କ୍ଷମତା
(କିନ୍ତୁ) ସ୍ନେହର ଶାସନ ଭଲ କହି ମିଠା କଥା
ଭଲେ ଭଲେ କାମ ଯାହା ଥାଆନ୍ତା ବା ହୋଇ
ନଷ୍ଟ କର ନାହିଁ ତାକୁ କଡ଼ା କଥା କହି

ଛୁଇଁବାକୁ ନିରତରେ ଶିଶୁ ଭୁଲ୍ ମନ
ଶିଶୁରେ କହିବ ଧୀରେ କୋମଳ ବଚନ
ଜିଣିବାକୁ ସ୍ନେହେ ତାର ସରଳ ପରାଣ
ବେଶୀ କାଳ ନ ରହଇ କେବେ ଶିଶୁପଣ

ଜରା ଜର୍ଜରିତ ପ୍ରାଣେ ନଦିଅ ବେଦନା
ଶେଷ ପ୍ରାୟ ଯାର ପଥ, ଭବିଷ୍ୟ ଅଜଣା
ମିଠାକଥା କହ ତୁମେ ସେଇ ବୃଦ୍ଧ ଜନେ
ବିଦାୟ ନେଉ ତ ସିଏ ଶାନ୍ତିଭରା ପ୍ରାଣେ

ପଥହରା ପଥିକକୁ କହ ମିଠା କଥା
ବୃଥା ଶ୍ରମ କରି କରି ନଇଁଛି ତା ମଥା
କା' ନିର୍ଦ୍ଦୟ ଭାଷା ତାକୁ ବାଟବଣା କରେ
ଫେରାଅ ନିର୍ଦ୍ଦିଷ୍ଟ ପଥେ ମିଠା ବ୍ୟବହାରେ

ଦରିଦ୍ରେ ନ ଦିଅ ବ୍ୟଥା କଠୋର ବାଣୀରେ
ଯଥେଷ୍ଟ ସହିଛି ସିଏ ଦୁନିଆ ବୁକୁରେ
ନିର୍ଦ୍ଦୟ ନ ହୋଇ ଧୀରେ କହ ମିଠା କଥା
କଡ଼ା କଥା କହି ତାର ନ ବଢ଼ାଅ ବ୍ୟଥା ।



# ଭବିଷ୍ୟ ବାର୍ତ୍ତା

ଚିର ଭବିଷ୍ୟତ୍ ଅନ୍ଧକାର ବକ୍ଷ
ମନ ଚାହେଁ, ପିଇବାକୁ ଗୋପନୀୟ ସୁଧା
ମେଣ୍ଟାଇ ତା, ଅଦମ୍ୟ ପିପାସା
ସେଥିପାଇଁ ମନ ଯାଏ ଯାର ପାଶେ
ହେଉ ସିଏ ଭବିଷ୍ୟତ ବକ୍ତା
ଗୃହତ୍ୟାଗୀ ପରମ ସନ୍ନ୍ୟାସୀ
ଅବା ଅର୍ଦ୍ଧଭୁକ୍ତ ଅପଗଣ୍ଡ
ଘରେଇ ଜ୍ୟୋତିଷ
ଖୋଜିବୁଲେ ପାଇବାକୁ ତାହାର ସାନିଧ
ବୁଲି ବୁଲି ଗଳିକନ୍ଦି ପାଗଳ ସ୍ୱରୂପ
ଭୁଲି କର୍ତ୍ତବ୍ୟର ଜ୍ଞାନ ଭୁଲି ବା ନିଜକୁ
ଧାଇଁଯାଏ ହିତାହିତ ପକାଇ ପଛରେ
ହୋଇଗଲେ ଅକସ୍ମାତ ଦେଖା
ସମସ୍ତ ବିଶ୍ୱାସ କ୍ଷଣେ
ଢାଳି ତାର ଶୁଷ୍କ ପଦତଳେ
ଚାହିଁରହେ ଶୁଣିବାକୁ
ଦୁଇପଦ ଭବିଷ୍ୟ ବାର୍ତ୍ତାରେ
ଭାବୁଥାଏ କହୁ ସିଏ ଖାଲି ଶୁଭ ବାର୍ତ୍ତା
ଘୁଂଚିବ ଏ ଦୁର୍ବିସହ ସଂସାର ବେଦନା
ଆସୁଅଛି ସେ ଶୁଭ ମୁହୂର୍ତ୍ତ
ସଙ୍ଗେ ନେଇ ଅନାବିଳ ମଙ୍ଗଳ ବାରତା ।

ଭବିଷ୍ୟର ଗୁପ୍ତ ପେଡ଼ି ଖୋଲି
ନିର୍ଭୁଲ ଗଣନା କରି
ଥୋଇ ଯାଉ ତା ସମ୍ମୁଖେ
ଧନଧାନ୍ୟ ଗୋପଲକ୍ଷ୍ମୀ ମେଳି ।

ଉନ୍ନତିର ଉନ୍ନତ ହାର୍ଦ୍ୟରେ
ଜୟ ଧ୍ୱଜା ଉଡ଼ ଫରଫର
ପ୍ରେୟସୀର ମନ ରାଜ୍ୟ ଅଧିକାର କରି
ବିନାଶ୍ରମେ ଜୟ କରୁ କୁବେର ଭଣ୍ଡାର
ଗୁଣି ଗାଣି ଆଖି ମୁଜି ନାସାଗ୍ରୀବା କରେ ଯେ କୁଞ୍ଚନ
ଜ୍ୟୋତିଷ ଖୋଲିଲେ ପାଠି
ଭାବେ ସତେ ମିଳିଯିବ ସବୁ ହଜାଧନ ।
ଠକ୍ ଠାକ୍ ଅଷ୍ଟତର କେତେ କଥା
ଭାସି ଯାଇଥିଲା ଯିଏ ଜୀବନ ସ୍ରୋତରେ
ଅଗ୍ନନକେ କାହିଁ ଆଣି ଥୋଇଦିଏ
ଫେଇ ମୋର ସ୍ମୃତି ପେଡ଼ି ମୋର ସମ୍ମୁଖରେ
ଭବିଷ୍ୟର ଆତଙ୍କିତ ପଦଚିହ୍ନ
ଆଜି ପୁଣି ନୂଆ ନୂଆ ଉନ୍ନତି ଯୋପାନ
ସବୁକୁ ମିଶାଇ ଏକ ବଡ଼ ପିଠା କରି
ମୋର ଆଗେ କରଇ ଚର୍ବଣ ।
ସେଥିରୁ ପୁଲାଏ ଧରି ମନକୁ ମୋ ଓଟାରି ଓଟାରି
ଭାବ ବୁଜୁଲି କାନ୍ଧରେ ଲେଉଟଇ ଘରେ
ସମାଜର ଜଂଜାଳକୁ ଦଳି
ମନ ମୋର ହସିଉଠେ ସୁନେଲି ସ୍ୱପ୍ନରେ
କିଂବା ଲସିଯାଏ ଅନାହୂତ
ଆବେଗରେ ଆପେ ଥରି ଥରି
ମନ ପୂରିଯାଏ ଯେବେ
କେତେ କେତେ ନୂଆ ଆଶଙ୍କାରେ
ଶେଷେ ତାର ପ୍ରାୟଶ୍ଚିତ ପାଇଁ
ନିଜକୁ ମୁଁ କରଇ ପ୍ରସ୍ତୁତ
ଅଧିଆ ପଡ଼ିବା ପାଇଁ ମନ୍ଦିର ଦୁଆରେ ।



# ଭବିଷ୍ୟ

ସ୍ୱଚ୍ଛ ସେ ଝରଣା ବହେ
ଆଙ୍କ ବାଙ୍କ ଗତି ପଥେ
ଗଣ୍ଡଶୈଳେ ନୀରବରେ
ଉପଳର ବୁକୁପରେ
ସୁଖେ ଦୁଃଖେ କୁହୁ କୁହୁ
ଗାଇ ସଂଗୀତ ନିରତେ
ଦୂରୁ ଦୂର ଜୀବନରେ
ରହି ରହି ସେ ଗୁପତେ
ଜଳରାଶିର ପ୍ରସାରେ
ସମତଳ ଗିରି ଶିରେ
ଆଶାପୂର୍ଣ୍ଣ ପ୍ରାଣେ ତାର
ବୁଡ଼ିରହେ ଶାନ୍ତ ସ୍ରୋତେ
ଜାଗେ ଯେବେ ଶିହରଣ
ଅନାହୂତ ସେ ଇଙ୍ଗିତେ
ଖୋଲିଯିବ ଶତଦ୍ୱାର
ମେଲିଯିବ ପଥ ତାର
ଭବିଷ୍ୟରେ ଆଶା ରଖି
ଲମ୍ଫ ଦେବ ଅନିଶ୍ଚିତେ
ଗୋପନ ଗୁହାରୁ ଆସି
ଜନାକୀର୍ଣ୍ଣ ଦ୍ୱାର ଦେଶେ
ନଦୀ ହୋଇ ବହିଯିବ
ଶତ ତଟ ବାହିନେବ
(କିଂବା) ଲୀନ ହେବ ତାର ଗତି
ମରୁ ବାଲୁକାର ପାଶେ ।



## କଳିଙ୍ଗା ଘାଟିର ସ୍ମୃତି

କୋଟର ଉଦ୍ଧାଡ଼େ ପର୍ବତର ତଳେ
ମାନବର ମାଡ଼ ଝରଣାର ଛଟରେ
ପରବତମାଳେ ମାଳବତ ଖେଳେ
ଯୁଗନଦ୍ଧା ସଙ୍ଗେ ନିର୍ଜନତା କୋଳେ
ହେ ଅରଣ୍ୟବାସୀ ବରେଣ୍ୟ ଦେବତା
ତୁମଠାରୁ ପାଇ ନିର୍ଭୟ ବାରତା
ତୁମରି ପ୍ରାଙ୍ଗଣେ ବନର ଦୁହିତା
ବୁଲେ, ମୁହେଁ କୁଟି ବ୍ୟାଘ୍ରଦାଗ ଚିତା
ଧରମ ପାଇଁକି ମିଶନାରୀ ଦଳ
ଗୁପତରେ ଆସି ସେଠି ହେଲେ ଠୁଳ
ସଭ୍ୟତା ନାମରେ ବିଦେଶୀ ବେଶର
ସରଳ ମାନବେ କରିଲେ ଜଟିଳ
ସହର ମଣିଷ ବୁଝେନାହିଁ ତାରେ
କରିବାକୁ ସଭ୍ୟ ନିଜ ସଭ୍ୟତାରେ
ସଂସାର ବୈରାଗୀ ମୁନିଜନ ସାଥେ
ବନଜଙ୍ଗଲର କାଳର ନିଶୀଥେ
ଚାଲୁଥିଲା ଯିଏ ନିର୍ବିବାଦ ପଥେ
ଟଣାହୁଏ ଏବେ ମିଛ ସ୍ରୋତ ନାଟେ
ନିର୍ଲୋଭ ମାନବ ଚିର ଅଚେତନ
ଅଳ୍ପକେ ସନ୍ତୋଷ ଥିଲା ଗିରିଜନ
ସାମ୍ୟବାଦୀ ଦୁଆ ଦରିଦ୍ର ଭାବନା
ଏବେ ତାର ହୃଦେ ଆଣେ ଆଲୋଡ଼ନା
ରାଜନୀତି ଦଳେ ଦେଇ ନାନା ରବ
ପୁରୁଣାରୁ ନୂଆ କରନ୍ତି ଉଦ୍ଭବ
ମରିହଜି ଯାଏ ସେ ଆଦି ମାନବ
ଆଉ କେତେଦିନେ ସତ୍ତା ନ ରହିବ ।



# ଭାବୁଅଛୁ ମୁହିଁ ବସି

ଅହେ ପୁରାତନ କବି ଆପିଗଲ ଯେଉଁ ଛବି
ସେ ଗଜ ଗମନା ଗୁରୁହାସ ନାଶା
ମରାଳ ମାଳନା ପ୍ରକୃତ ସୁନ୍ଦରୀ
ସବୁ ତ ଯାଉଛି ଲିଭି କସ ଆଉ ତାହା ଭାବି

ପୁରାଣ ଲେଖନୀ ତଳେ ତୃପ୍ତିର ମୟୁଖ ଝଲେ
ଗୁରୁ ଗମ୍ଭୀର ଭାବର ଆବେଗ
ପ୍ରିୟା ପାଇଁ ପ୍ରିୟ ଜୀବନ ଉଦ୍‌ବେଗ
ସବୁଥିରେ ଥିଲା ଶାନ୍ତ ଏବେ ସବୁ ସିନା ଭ୍ରାନ୍ତ

ଦୁନିଆ ବଦଳେ ଆଜ ସମାଜ ଯାଉଛି ଭାଜି
ରାମାୟଣ ବନ୍ଧ ସେ ଜଟାୟୁ ପକ୍ଷୀ
ଅବା ମେଘଦୂତ ଆଉ ନୁହିଁ ସାକ୍ଷୀ
ସ୍ପୁଟ୍‌ନିକ ବକ୍ଷେ ଚଢ଼ି ମଣିଷ ଆସଇ ବୁଲି

(ଏବ) କବିତା ଦେହରେ ପକ୍ଷୀ ରସ ସବୁ ଯାଏ ଲଖି
ଏମୁଣ୍ଡ, ସେମୁଣ୍ଡ ବଦାଣ ଢଳିଲେ
ସବୁ ପଢ଼ିସାରି କଛି ନ ବୁଝିଲେ
ଆଧୁନିକ କବି ଖୁସି ଭାବୁଅଛୁ ମୁହିଁ ବସି ।



# ଭଗବାନ ସତେ ପଳାଇଲେ

ମାନବ ସମାଜ ଆଦ୍ୟଆଳେ
ସେ କେଉଁ ଯୁଗର
ଆଦି ମାନବଟି
ବଡ଼୍ଚ ସଭ୍ୟତା ହର୍ମ୍ୟତଳେ
ସେ ଆଦି ପୁରୁଷ 'କସ' ଥିଲେ ?
ବାନର ପ୍ରକୃତି
ଫୁଟି ବାହାରୁଛି
ଏଣୁ ନବଯୁଗ ସଂସ୍କୃତିରେ
ସ୍କୁଲ୍ କଲେଜ ପାଠ ଘରେ
ସରସ୍ୱତୀ ପୂଜା
ଗଣେଶ ବନ୍ଦନା
ଗୁଞ୍ଜଇ ଅଶ୍ଳୀଳ ସଙ୍ଗୀତରେ
ତାରକା ହୋଟେଲ୍ ନିର୍ମାଣରେ
ଶିଳପ ବିପ୍ଳବ
ଆଗେଇ ଗୁଞ୍ଜଇ
ଟେଲିଭିଜନର ପ୍ରଚାରରେ

ସତ୍ୟ ମିଥ୍ୟା ଆଜି କଏ ବାରେ
ଶତ ପ୍ରତିଶ୍ରୁତି
ନିର୍ବାଚନ ବେଳେ
ଲୁଟେ ନେତା, ଶ୍ରେଷ୍ଠ ସରଗଲେ
'ରାମ' ନାମ ଅପପ୍ରଚାରରେ
ଲୁଚିଯାଇ 'ରାମ'
'ମରା' ପରକଟେ
ରାବଣର ବ୍ୟୋମ ବିମାନରେ
ଲକ୍ଷ୍ମଣ ଭକତି ଭାଇଠାରେ
ଭାଇ ଭାବ କାହିଁ
ଉଭାଇ ଯାଇଛି
ଦେଶ ବିଭାଜନ କୋଳାହଳେ
ଭକତି, ବଦଳେ 'ଧରମ'ରେ
ଖେଳ, ଗୋଳକରେ
ବାବାଜି ବେଶରେ
ପୂର୍ଣ୍ଣତା ଲଭଇ ଚିଲମରେ

ସତୀ ସୀତା ଉମା ଆଦର୍ଶରେ
    ଲୋପ କରି ଏବେ
    ନୂଆ ସତୀ ହୁଲେ
କଲ୍‌ଗାର୍ଲର ଅଭ୍ୟାସରେ
ଅହିଂସା ଧରମ ବଦଳରେ
    ମନ୍ଦିରରୁ ଉଠେ
    ଆତଙ୍କ ଆହ୍ୱାନ
ଭକ୍ତ ରକ୍ତ ପ୍ଲାବନରେ
ନୂତନ ଦୁନିଆ ଭେଳକିରେ
    ସନ୍ତ ମାନବ
    ଆଜ କମ୍ପ୍ୟୁଟର
ପଙ୍ଗୁ କରିଦିଏ ଶ୍ରମିକରେ
କୋଟି କୋଟି ଟଂକା ଖରଚରେ
    ଖେଳ, ସମ୍ମିଳନୀ
    ଦିଲ୍ଲୀ ବୁକୁପରେ
ଖାଦ୍ୟ ବିନା ପିଲ ବିକ୍ରୀ ହୁଲେ

ସୁଖ ବିଳାସର ମାଧ୍ୟମରେ
    ମଟରର ଧୂଆଁ
    ଫସଲର ସାର
ଡାକେ, କ୍ୟାନ୍‌ସର ଆଲର୍ଜିରେ
ପରାକାଷ୍ଠା ଶୋଭେ ବିଜ୍ଞାନରେ
    ସୃଷ୍ଟିର କାରଣ
    ଜୀବ-ରସାୟନ
ଉଭାହୁଏ ଟେଷ୍ଟଟିଉବରେ
ବିଜ୍ଞାନର ଅପବ୍ୟବହାରେ
    ଗୋଦଡ଼ା କୋଡ଼ଇ
    କୋଡ଼ ସେ ମାଡ଼ଇ
ନର ମେରୁଦଣ୍ଡ ଭାଙ୍ଗି ପଡ଼େ
ଏ ନବ ସଭ୍ୟତା ଚିତ୍କାରରେ
    ପ୍ରକୃତି ଧୁଂଗଇ
    ମାନବଠୁ ଦୂରେ
ଭଗବାନ ସତେ ପଳାଇଲେ ।



## କି କବିତା ଆଉ ଲେଖିବ ମୁହିଁ

ବହି ଗୁଳଥାଏ ଚଟିମିଟି କାହିଁ
କୁହୁ କୁହୁ ଛଳ କବିତା ଗାଇ
ଛପିଛପି ଆସେ ସୁଲୁସୁଲୁ ବାଆ
ସୁନ୍ଦର ସ୍ୱରୁ ସଙ୍ଗୀତ ନେଇ
ଶିଶୁର ଦନ୍ତେଣ୍ଟି ମଧୁର ବଚନ
କବିତା ରସରେ ରହୁଛି ଭରି
ପଲ୍ଲୀବାଳା କାଖେ ଚହଲ ଉଠଇ
ସଙ୍ଗୀତ ମନ୍ତ୍ରରେ ମାଟିଆ ପରି
କେନାଲ ବନିଛି ଚଟିମାଟି ଏବେ
ଚାଟି ମେଲା ହେଲେ ବହଇ ପାଣି
ଘିର ଘିର ବୁଲ ବିଜୁଳିର ପଂଖା
ଘର ପବନକୁ ବାଂଟଇ ଆଣି
ଦୂରଦର୍ଶନରୁ ଶିଶୁ ଶିଖେ ପାଠ
ଡାଡ, ମମି ଏବେ ପ୍ରଥମ ଡାକ
ରେଡ଼ିଓ ସଙ୍ଗୀତେ ସିନେମା ଚମକେ
ବଦଳୁଛି ପଲ୍ଲୀବାଳାର ଭେକ
ବଢ଼ନ୍ତ ଦରକୁ ଭେଜାଲ ବଜାର
ଘରର ବଜେଟ ପାଅଇ ହ୍ରାସ
କୃତ୍ରିମ ଖାଦ୍ୟକୁ ଦୁର୍ବାସୁ ଇନ୍ଧନ
ଗ୍ୟାସ୍ ବନା ଲଭେ ଘରଣୀ ହସ
ଦୂଷିତ ବାୟୁକୁ ନିଶ୍ୱାସରେ ନେଇ
ଶରୀରଟା ଏବେ ଆଲର୍ଜି ଭୂଇଁ
ଜୀବନ କବିତା ଲୁଚଇ ଗଦ୍ୟରେ
କି କବିତା ଆଉ ଲେଖିବ ମୁହିଁ ।

